ଅନ୍ନପୂର୍ଣ୍ଣା ମହାରାଣାଙ୍କ



# ବାପା

**(ଗୋପବନ୍ଧୁ ଚୌଧୁରୀଙ୍କ ସଂକ୍ଷିପ୍ତାତ୍-ସଂକ୍ଷିପ୍ତ ଜୀବନଚରିତ)**

ଅନ୍ନପୂର୍ଣ୍ଣା ମହାରାଣାଙ୍କ ଲିଖିତ

# ଗୋପବନ୍ଧୁ ଚୌଧୁରୀଙ୍କ ସଂକ୍ଷିପ୍ତାତ୍-ସଂକ୍ଷିପ୍ତ ଜୀବନଚରିତ



## ବାପା

ବାପା : ଗୋପବନ୍ଧୁ ଚୌଧୁରୀଙ୍କ ସଂକ୍ଷିପ୍ତାଦ୍-ସଂକ୍ଷିପ୍ତ ଜୀବନଚରିତ
ଲେଖିକା: ଅନ୍ନପୂର୍ଣ୍ଣା ମହାରାଣା
ପ୍ରକାଶକ: କର୍ମଦେବ ମହାରାଣା, ଜ୍ଞାନଦେବ ମହାରାଣା
ପ୍ରକାଶନ କାଳ: ୩୧ ଡିସେମ୍ବର, ୨୦୧୬
ପ୍ରଥମ ମୁଦ୍ରାଙ୍କନ
ମୁଦ୍ରଣ ଖରଚ: @ ୨୫ ଟଙ୍କା
Author : Annapurna Maharana
Title : BAPA : Gopabandhu Chowdhurinkara Samkshiptat-samkshhita jeebana charita ;
(Oriya)
(Biography of Gopabandhu Chowdhuri)

Publisher : Karmadeva Maharana and Jnanadeva Maharana
First Edition; December 31, 2016.
email: karmadevamaharana@gmail.com
ଯୋଗାଯୋଗ ନମ୍ବର 7855040226 ଶ୍ରୀ ପ୍ରଫୁଲ୍ଲ ବେହେରା, କଟକ
ପ୍ରାପ୍ତିସ୍ଥାନ:
ଜାତୀୟ ଗୌରବ ମଧୁସୂଦନଙ୍କ ଜନ୍ମସ୍ଥାନ, ସତ୍ୟଭାମାପୁର;
ମନମୋହନ ଚୌଧୁରୀ ଓ ଅନ୍ନପୂର୍ଣ୍ଣାଙ୍କ ଜନ୍ମସ୍ଥାନ, ସନ୍ ସାଇନ୍ ପଡ଼ିଆ ପଶ୍ଚିମ କୋଣ, ବାଖରାବାଦ, କଟକ

# ଅବତରଣିକା

ଏହି ପୁସ୍ତିକାର ପାଣ୍ଡୁଲିପିଟି ଲେଖିକାର ଦେହାବସାନ ପରେ ଆବିଷ୍କୃତ ହେଲା । ସେଥିପାଇଁ ଶ୍ରୀ ପ୍ରଫୁଲ୍ଲ ବେହେରାଙ୍କ ଅବଦାନ କୃତଜ୍ଞତା ସହ ସ୍ୱୀକାର କରୁଛୁ । ପାଣ୍ଡୁଲିପିରେ ଉଲ୍ଲିଖିତ ପ୍ରତ୍ୟେକ ପ୍ରାସଙ୍ଗିକ ବ୍ୟକ୍ତିଙ୍କର କ୍ଷୁଦ୍ର ଫଟୋ ବା ଚିତ୍ର ସନ୍ନିବେଶିତ କରି ସ୍ମୃତିକୁ ଉଜ୍ଜୀବିତ ରଖିବାକୁ ଉଦ୍ୟମ କଲୁ । ତେବେ ଅନେକ ବିଶିଷ୍ଟ ସହକର୍ମୀଙ୍କର ଚିତ୍ର ପାଇପାରିଲୁ ନାହିଁ । ଏଥିଯୋଗୁଁ ଅବଶୋଷ ରହିଲା ଓ କ୍ଷମାଭିକ୍ଷା କରୁଛୁ । ସ୍ୱାଧୀନତା ସଂଗ୍ରାମୀ ବାନର ସେନା ପୂଜ୍ୟ ଶ୍ରୀଯୁକ୍ତ ପୁରୁଷୋତ୍ତମ ସିଂହ ଓ ତାଙ୍କ ସୁପୁତ୍ର ଶ୍ରୀ ପ୍ରଦୀପ୍ତ କୁମାର ସିଂହ ବହୁ କଷ୍ଟରେ ତଥ୍ୟ ଓ ଫଟୋ ଯୋଗାଡ଼ କରି ତିନୋଟି ଭାଗରେ ପ୍ରକାଶ କରିଥିବା 'ସ୍ୱାଧୀନତା ସଂଗ୍ରାମରେ ବାନର ସେନା' ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ଇତିହାସର ଗୋଟିଏ ଗୁରୁତ୍ୱପୂର୍ଣ୍ଣ କୃତୀ । ଶ୍ରୀଯୁକ୍ତ ସିଂହଙ୍କ ବହିରୁ ଏହି ପୁସ୍ତିକାରେ ଅନେକ ଫଟୋ ସ୍ଥାନ ପାଇଛି । ଶ୍ରୀ ସିଂହଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛୁ । ଅଧିକାଂଶ ବାନରସେନା ସ୍ୱାଧୀନତା ଅନ୍ଦୋଳନରେ ଯୋଗଦାନ କରିବାକୁ ପ୍ରଥମେ ଗୋପବନ୍ଧୁ ଚୌଧୁରୀଙ୍କ ପାଖକୁ ଆସିଥିଲେ ।

ଶ୍ରୀଯୁକ୍ତ ସିଂହଙ୍କ ସାଥୀ କୈଶୋରରେ ହିଁ ଜେଲ୍ ଭିତରେ କଲବଲ ହୋଇ ମରିଛନ୍ତି । ବିଦେଶୀ ଶାସକ ପାଖରେ କ୍ଷମାଭିକ୍ଷା କରି ନାହାନ୍ତି । ନିଜ ଆତ୍ମବଳରେ ବିଶ୍ୱ ଇତିହାସରେ ଏକ ଅଭିନବ ସଂଗ୍ରାମରେ ସ୍ୱତଃପ୍ରବୃତ୍ତ ବ୍ରତୀ ହୋଇ ଆତ୍ମଦାନ କରିଛନ୍ତି । ଅନ୍ୟ ଅବିବେକୀ, ନୃଶଂସ ବିଦେଶୀ ଶକ୍ତିର ଅନୁଗ୍ରହ ଭିକ୍ଷା କରି ନାହାନ୍ତି । ଏକଦା ଆମ ଦେଶ ସଂସ୍କୃତି, ଦର୍ଶନ, ତର୍କଶାସ୍ତ୍ର, ସାହିତ୍ୟ, ଗଣିତ, ବିଜ୍ଞାନ ଆଦିରେ ବିଶ୍ୱରେ ଅଗ୍ରଣୀ ଥିଲା । ତାହାରି ଉପଯୁକ୍ତ ଉତ୍ତରାଧିକାରୀ ଭାବରେ ଶହୀଦ୍ ଏହି ବାନର ସେନାଙ୍କୁ କୃତଘ୍ନ ଦେଶ ଓ ଜାତି ସମ୍ମାନ ତ ଦେଇ ନାହିଁ, ସ୍ମୃତିପଟରୁ ପୋଛି ପକାଇଛି । ସେମାନଙ୍କ ଏକକ ଫଟୋ ଦୁଷ୍ପ୍ରାପ୍ୟ ।

ଗୋପବନ୍ଧୁ ଚୌଧୁରୀଙ୍କ ଜୀବନ ବୃତ୍ତାନ୍ତ ବିଷୟକ ବହିର ଉପଯୁକ୍ତ ମୁଖବନ୍ଧ ତାଙ୍କ ଜୀବନ ଦର୍ଶନ ଓ କାର୍ଯ୍ୟାବଳିକୁ ସେହି ପଥର ପ୍ରଜ୍ଞାବାନ୍ ଯାତ୍ରୀ କେବଳ ସମୀକ୍ଷା କରି ଲେଖିପାରିବେ । ବର୍ତ୍ତମାନ ସେ ପ୍ରକାର ଯୋଗ୍ୟ ବ୍ୟକ୍ତି ନାହାନ୍ତି । ତେଣୁ ଆମ ଅନୁରୋଧରେ ଏହାର ବିକଳ୍ପ ରୂପେ ଦାର୍ଶନିକ ଜିତେନ୍ଦ୍ର ନାଥ ମହାନ୍ତି ତାଙ୍କ ସ୍ମୃତିରୁ ଉଦ୍ଧାର କରି ଦି ପଦ ବାର୍ତ୍ତା ପ୍ରେରଣ କରି ପୁସ୍ତିକାକୁ ଋଦ୍ଧିମନ୍ତ କରିଛନ୍ତି ।

ଖାନନଗର ଶ୍ମଶାନରେ ନିଶ୍ଚିହ୍ନ ହୋଇଥିବା ଦେଶ ମାତୃକା ତଥା ମାନବ ସମାଜର ହିତ ପାଇଁ ଉତ୍ସର୍ଗୀକୃତ ଗୋଟିଏ ଜୀବନର ପ୍ରୟୋଗାନୁଭୂତି ଓ ଆଦର୍ଶ ଦାୟାଦଗଣଙ୍କୁ କିଂଚିତ୍ ମାତ୍ରାରେ ମଧ୍ୟ ସୂଚାଇ ପାରିଲେ ଏହି ପୁସ୍ତିକାର ପ୍ରକାଶନ ସାର୍ଥକ ହେବ ।

କର୍ମଦେବ ମହାରାଣା — ଜ୍ଞାନଦେବ ମହାରାଣା

ଭୁବନେଶ୍ୱର, ୩୧ ଡିସେମ୍ବର ୨୦୧୬

# ଅନୁଭାବ୍ୟ

ଗୋପବନ୍ଧୁ ଚୌଧୁରୀ ମୋର ବଡ଼ମାମୁ । ଆମେମାନେ ତାଙ୍କର ବାଖରାବାଦ ଘରେ ଅନେକ ଦିନ ରହିଥିଲୁ । ସେ ସମୟରେ ମୋର ପିତା ଜଗନ୍ନାଥ ମହାନ୍ତି କଟକରେ ଅବସ୍ଥାପିତ ଥିଲେ । ମୋର ବାଲ୍ୟଜୀବନରେ ମୁଁ ତାଙ୍କର ସାନ୍ନିଧ୍ୟ କ୍ୱଚିତ୍ ଲାଭ କରିଥିଲି । ଗୋପବନ୍ଧୁ ଚୌଧୁରୀ ସେହି ସମୟରେ ଓଡ଼ିଶାର ସ୍ୱାଧୀନତା ଅନ୍ଦୋଳନର କର୍ଣ୍ଣଧାର ଥିଲେ । ସେ ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇ କାରାବରଣ କରିଥିଲେ । ୧୯୩୪ ମସିହାରେ ସେ ସପରିବାର ବରୀ ଚାଲିଗଲେ ଓ ସେବାଘରେ ଗଂଧୀଜୀଙ୍କର ରଚନାତ୍ମକ କାର୍ଯ୍ୟକ୍ରମରେ ସମସ୍ତ ଶକ୍ତି ନିୟୋଜିତ କଲେ । ସେଇ କେତେବର୍ଷ ମୁଁ ତାଙ୍କର ସଂସ୍ପର୍ଶରେ ବହୁତ କମ ଆସିଥିଲି ।

ମୋର କୈଶୋରରେ ମୁଁ ଆମ ଗାଁ ଚଉଦକୁଲାଟରୁ ସାଇକଲରେ ବରୀ ଯାଇ ତାଙ୍କର ଆଶ୍ରମରେ କିଛି ଦିନ ବିତାଇ ଥିଲି ।

ଗୋପବନ୍ଧୁ ଚୌଧୁରୀଙ୍କ ବ୍ୟକ୍ତିତ୍ୱ ମୋର ମନରେ କିଂଚିତ୍ ରେଖାପାତ କରିଛି । ମୁଁ କଲିକତାରେ ଛାତ୍ର ଥିବା ସମୟରେ ହାର୍ଡ଼ିଂଜ ହଷ୍ଟେଲ୍‌ରେ ରହୁଥିଲି । ସେ ଶେଷ ଥର ଜେଲ୍‌ରୁ ମୁକୁଳିବା ପରେ ନାନା କାମରେ କଲିକତା ଆସୁଥିଲେ । ସେ ତାଙ୍କର ପ୍ରତ୍ୟେକ କଲିକତା ରହଣି ସମୟରେ ମୋ ସହିତ ନିଶ୍ଚିତ ସାକ୍ଷାତ୍ କରୁଥିଲେ । ଦିନକର ଘଟଣା: ସେ ସକାଳୁ ମୋର ହଷ୍ଟେଲ୍‌ରେ ପହଂଚିଲେ । ଦରୁଆନ୍ ତାଙ୍କୁ ଚିହ୍ନିଯାଇଥିଲା ।ସେ ମୋର ରହିବା ବଖରାରେ ପହଂଚିଲେ । ମୁଁ ଏମ୍. ଏ. ସହିତ ବି. ଏଲ୍. ପଢୁଥିଲି । ସକାଳୁ ଲ' କ୍ଲାସ୍‌କୁ ଚାଲି ଯାଇଥିଲି ।ସେ ଗାଧୋଇ ଆସି ଚୌକିରେ ବସିଥିଲେ । ମୋର ଟେବୁଲ୍ ଉପରେ କେତେ ଗୁଡ଼ାଏ ଚିଠି ପଡ଼ିଥିଲା । ସେଥିରେ ତାଙ୍କରି ମୋ ପାଖକୁ ଲେଖା ଚିଠିଟିଏ ମଧ୍ୟ ଥିଲା । ମୁଁ ଫେରିଲାରୁ ସେ ମୋତେ ପ୍ରଶ୍ନ କଲେ "କୁନି! ତୁ ଏ ଚିଠି ଗୁଡ଼ାକ କାହିଁକି ରଖିଛୁ? ଏ ସବୁ ସାଇତି ରଖିଲେ ଆସକ୍ତି ବଢ଼ିବ । ନିର୍ଲିପ୍ତ ଜୀବନ ଯାପନ କରିବାକୁ ହେଲେ ଏ ସବୁରୁ ମୁକ୍ତି ଆବଶ୍ୟକ ।" ଏତକ କହି ସାରି ମୋତେ-ଲେଖା ଚିଠିଟିକୁ ସେ କୁଟ୍ କୁଟ୍ କରି ଚିରି ପକାଇଦେଲେ ।

ମୋର ପିତାଙ୍କ ଦେହାନ୍ତ ଭଂଜନଗରରେ ହୋଇଗଲା । ବଡ଼ମାମୁ କେଇଦିନ ପରେ ଚଉଦକୁଲାଟ ଆସିଲେ । ତାଙ୍କୁ ଦେଖି ବୋଉ ବହୁତ କାନ୍ଦିଲା ।ତାକୁ ମାମୁ ପଚାରିଲେ " ଜଗନ୍ନାଥ ଚାଲିଗଲେ କ'ଣ କାନ୍ଦୁଚୁ? ସେ କେଉଁଠିକି ଗଲା, ସେ କେଉଁଠି ଅଛି ମୁଁ ତ ଜାଣେନା । ତୁ ଏଇ କୁନିକୁ ପଚାର, ସେ ଇ ଏ କଥା ସବୁ ଜାଣିଛି, ସେ ତୋତେ କହିବ ।" ଘରେ କ'ଣ କ୍ରିୟାକର୍ମ ହେଉଛି ପଚାରି ବୁଝିଲେ ।ବ୍ରାହ୍ମଣ ଭୋଜନର ବ୍ୟବସ୍ଥା ଶୁଣି କହିଲେ: " ଗୋଟିଏ କାମ କର । ତମ ସାଇକୁ ଲାଗି ଯେଉଁ ଅଛୁଆଁ 'ପାଣ', 'କଣ୍ଡରା' ସାଇ ଅଛି ସେଇଠୁ ଚାରି ପାଂଚ ଜଣଙ୍କୁ ଡାକି ଆଣି ଆଜି ଆଜି ଘରେ ଖାଇବା ପାଇଁ ଦେ ।" ବଡ଼ମାଈଁ ଗୁରୁତର ଭାବରେ ଅସୁସ୍ଥ ଥିଲେ । ମୁଁ ଓ ବୋଉ ତାଙ୍କୁ ଦେଖିବା ପାଇଁ ଯାଇଥିଲୁ ।ଆମେ ୧୯୫୮ ଏପ୍ରିଲ୍ ୨୮ ତାରିଖରେ ଥୋରିଆସାହିରେ ଥିଲୁ । ସେ ଦିନ ବଡ଼ମାମୁ ଭୁବନେଶ୍ୱର ଯାଇଥିଲେ ଓ ସନ୍ଧ୍ୟା ବେଳକୁ ଫେରିଲେ । ରାତିରେ ଛାତିରେ ଯନ୍ତ୍ରଣା ଅନୁଭବ କଲେ । ତାଙ୍କୁ ପାଣିକୁଣ୍ଡରେ ନେଇ ବସାଇଲେ ।ଅଳ୍ପ ସମୟରେ ତାଙ୍କର ଦେହାନ୍ତ ହୋଇଗଲା ।

ବଡ଼ମାମୁଙ୍କ ମୃତ୍ୟୁପରେ ବିନୋବାଜୀ ଯାହା କହିଥିଲେ ମୁଁ ପଢ଼ିଥିଲି । ତା'ର ସାର ମର୍ମ ହେଲା :

" ମୁଁ କ'ଣ ଲେଖିବି? ସେ ସାଧନା କରି ଯେଉଁ ସ୍ତରରେ ପହଂଚି ପାରିଥିଲେ ମୁଁ ଏକାକୀ ସେହି ସାଧନା କରି ସେ ସ୍ତରରେ ଏବେ ମଧ୍ୟ ପହଂଚି ପାରିନାହିଁ । ସେ ଓ ତାଙ୍କର ପରିବାରକୁ ସାଙ୍ଗରେ ନେଇ ଯେଉଁ ସିଦ୍ଧି ହାସଲ କରି ପାରିଥିଲେ ମୁଁ ଏକା (ବ୍ରହ୍ମଚାରୀ ହୋଇ) ସେଇ ସିଦ୍ଧି ନିମିତ୍ତ ପ୍ରଚେଷ୍ଟା କରୁଛି ।"

ଜିତେନ୍ଦ୍ରନାଥ ମହାନ୍ତି



ଗୋପବନ୍ଧୁ ଚୌଧୁରୀଙ୍କ ୧୯୨୭ରେ ଅଙ୍କା ଚିତ୍ର

୧୯୦୭ ମସିହା ହେବ । ଭାରତବର୍ଷରେ ସ୍ୱଦେଶୀ ଆନ୍ଦୋଳନର ମୌସମ । ୧୯୦୫ ର ରୁଷିଆ-ଯାପାନ୍ ଯୁଦ୍ଧରେ ଯାପାନ୍ ପୋର୍ଟ ଅର୍ଥର୍ ଦଖଲ କରିବା ପରେ ଏସିଆ ମହାଦେଶରେ ବିଶେଷତଃ ଭାରତବର୍ଷରେ ଏକ ଆତ୍ମବିଶ୍ୱାସର ଜୁଆର ମାଡ଼ିଆସି ଥାଏ । ଏ ପ୍ରକାର ପରିସ୍ଥିତି ଦେଖି ବ୍ରିଟୀଶ୍ ସରକାର ସତର୍କ ହୋଇ ଏକ ଆଜ୍ଞା ପତ୍ରିକା ଜାରି କଲେ ଯେ ସରକାରୀ ସ୍କୁଲ୍‌ରେ ପଢୁଥିବା କୌଣସି ଛାତ୍ର ସ୍ୱଦେଶୀ ସଭା, ଶୋଭାଯାତ୍ରାରେ ଯୋଗ ଦେଇ ପାରିବେ ନାହିଁ । ଏହି ସମୟରେ ସ୍ୱନାମଧନ୍ୟ ସ୍ୱଦେଶୀ ଆନ୍ଦୋଳନରେ ନେତା ବିପିନ ଚଂଦ୍ର ପାଲ କଟକକୁ ସ୍ୱଦେଶୀ ପ୍ରଚାର କରିବାକୁ ଆସିଲେ । "ବାଲ୍ ପାଲ୍ ଓ ଲାଲ୍"



ବିପିନ ଚନ୍ଦ୍ର ପାଲ

ଅର୍ଥାତ୍ **ବାଲ ଗଂଗାଧର ତିଲକ୍, ବିପିନ୍ ଚଂଦ୍ର ପାଲ୍ ଓ ଲାଲା ଲାଜପତ ରାୟ** ସେତେବେଳେ ଭାରତର ଶ୍ରେଷ୍ଠ ବାଗ୍ମୀ । ରେଭେନ୍ସା କଲେଜିଏଟ୍ ସ୍କୁଲ୍‌ର କେତେ ଜଣ ଛାତ୍ର ତାଙ୍କ ବକ୍ତୃତା ଶୁଣିବା ପାଇଁ ସେହି ସ୍ୱଦେଶୀ ସଭାରେ ଯୋଗ ଦେଲେ । **ବେଣୀ ମାଧବ ଦାସ** ସେତେବେଳେ ରେଭେନ୍ସା କଲେଜିଏଟ୍ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଥାଆନ୍ତି । ତାଙ୍କ ପୁଅ **ବିମଳ ଚଂଦ୍ର ଦାସ** ମଧ୍ୟ ସେହି ସ୍କୁଲ୍‌ରେ ପଢୁଥାନ୍ତି । ସେ ମଧ୍ୟ ସେ ଦିନର ସ୍ୱଦେଶୀ ସଭାରେ ଯୋଗ ଦେଲେ ।



ବେଣୀ ମାଧବ ଦାସ

କିଛିଦିନ ପରେ ସରକାରୀ ଶିକ୍ଷା ବିଭାଗରୁ ନିର୍ଦ୍ଦେଶ ଆସିଲାଯେ ଯେଉଁ ଛାତ୍ରମାନେ ସ୍ୱଦେଶୀ ସଭାରେ ଯୋଗ ଦେଇଥିଲେ ସେମାନଙ୍କୁ ଦଣ୍ଡ ଦେବାକୁ ହେବ । ପ୍ରଧାନ ଶିକ୍ଷକ ବିଭିନ୍ନ ଶ୍ରେଣୀକୁ ବିଜ୍ଞପ୍ତି ପଠାଇଲାରୁ ବିମଳ ଚନ୍ଦ୍ରଙ୍କ ସମେତ ଦଶଜଣ ଛାତ୍ର ପ୍ରଧାନ ଶିକ୍ଷକଙ୍କ ନିକଟରେ ହାଜର ହେଲେ । ତନ୍ମଧ୍ୟରୁ ତିନିଜଣ ହେଉଛନ୍ତି ଆଜିକାଲିକା ଦଶମ ଶ୍ରେଣୀର ଛାତ୍ର । ସେମାନଙ୍କ ମଧ୍ୟରେ ପୁଣି ସ୍କୁଲ୍‌ର ଏକମାତ୍ର କୋଟ୍‌ପ୍ୟାଣ୍ଟଧାରୀ ଛାତ୍ର ଜଣକ ଥାନ୍ତି । ପ୍ରଧାନ ଶିକ୍ଷକ ମହୋଦୟ Plain living & High thinking ପୁସ୍ତକରୁ ଏକ ନିର୍ଦ୍ଧାରିତ ଅଂଶ କଳାପଟା ପାଖରେ ଛିଡ଼ା ହୋଇ

ଲେଖିଲେ ଏବଂ ଏହି ଛାତ୍ରମାନଙ୍କୁ ବେଂଚ୍ ଉପରେ ଛିଡ଼ା ହୋଇ ନକଲ କରିବାକୁ ଆଦେଶ ଦେଲେ । ଛାତ୍ରମାନେ ବେଂଚ୍ ଉପରେ ଛିଡ଼ା ହୋଇ କଳାପଟାର ଲେଖା ନକଲ କରିସାରିବା ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷକ ମହୋଦୟ ମଧ୍ୟ କଳାପଟା ପାଖରେ ଛିଡ଼ା ହୋଇ ରହିଲେ । କୋଟ୍‌ପାଣ୍ଟଧାରୀ ଛାତ୍ରଟିକୁ ସେଦିନ ଯେଉଁ ଶାସ୍ତି ଦିଆଗଲା, ତାହାଫଳରେ ବୋଧହୁଏ ସେହିଦିନ ଓଡ଼ିଶାରେ ଗାଂଧୀ-ଆଶ୍ରମର ଭିତ୍ତି ସ୍ଥାପନ ହେଲା । ଅନ୍ତତଃ ସେହି ଦିନ ଠାରୁ ସେହି ଛାତ୍ରଙ୍କର ପୋଷାକ ପରିବର୍ତ୍ତନ ଘଟିଲା । ସେହି ଛାତ୍ର ପରବର୍ତ୍ତୀ କାଳରେ ଜଣେ ଡ଼େପୁଟି ହେଲେ ଏବଂ ଅସହଯୋଗ ଆନ୍ଦୋଳନ ସମୟରେ ଡ଼େପୁଟି ପଦରୁ ଇସ୍ତଫା ଦେଇ ଗାନ୍ଧୀଜୀଙ୍କର ଜଣେ ପ୍ରଧାନ ଶିଷ୍ୟ ଓ ଓଡ଼ିଶାରେ ଗାନ୍ଧୀ-ଆଶ୍ରମ ପ୍ରତିଷ୍ଠାତା ରୂପେ ସୁପ୍ରସିଦ୍ଧ ହେଲେ । ସେ ବରାବର କହୁଥିଲେ

"ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇ ଜୀବନରେ ଅନେକ ଦଣ୍ଡ ଭୋଗିଛି କିନ୍ତୁ ମାଷ୍ଟାର୍ ମହାଶୟଙ୍କ ଦ୍ୱାରା ପ୍ରଦତ୍ତ ଜୀବନର ସେହି ପ୍ରଥମ ଦଣ୍ଡର ମଧୁର ସ୍ମୃତି କେବେହେଁ ଭୂଲି ନାହିଁ" ( ସ୍ମୃତି ତୀର୍ଥର ଘାଟେ ଘାଟେ, ପୃ ୩୫, ଲେଖକ ବିମଳଚନ୍ଦ୍ର ଦାସ) ।

ଏହି କୋଟ୍‌ପାଣ୍ଟଧାରୀ ଛାତ୍ରଟିର ନାମ **ଗୋପବନ୍ଧୁ ଚୌଧୁରୀ** । ସେଥିଲେ ଓକିଲ ଶ୍ରୀ **ଗୋକୁଳାନନ୍ଦ ଚୌଧୁରୀ**ଙ୍କ ଅଷ୍ଟମ ସନ୍ତାନ ।

ଗୋକୁଳାନନ୍ଦ ଚୌଧୁରୀଙ୍କ ଘର ଜଗତ୍‌ସିଂହପୁର ସବ୍‌ଡିଭିଜନ୍‌ର ଖେରସ ଗାଆଁରେ । ସେ କଟକରେ ପାଠ ପଢ଼ି ଓକିଲାତି କଲେ ଏବଂ କାଳକ୍ରମେ କଟକରେ ଘରଦ୍ୱାର କରି କଟକ ବାସିନ୍ଦା ହୋଇଗଲେ । ଗୋକୁଳାନନ୍ଦ ଚୌଧୁରୀ କାଠଯୋଡ଼ି ନଦୀର ମହାବୀର ଘାଟ ନିକଟସ୍ଥ ଗୋଟିଏ ଭଡ଼ାଘରେ ରହୁଥିବା ବେଳେ



**ଗୋପବଂଧୁ** ୧୮୯୫ ମସିହା ମେ ୮ ତାରିଖ (ବୈଶାଖ ପୂର୍ଣ୍ଣମା)ରେ ଓ ତାଙ୍କ ସାନଭାଇ **ନବକୃଷ୍ଣ** ୧୯୦୧ ମସିହା ନଭେମ୍ବର ୨୩ ତାରିଖରେ ସେହି ଘରେ ଜନ୍ମଗ୍ରହଣ କରିଥିଲେ, ପରବର୍ତ୍ତୀ କାଳରେ ସେହି ଘରଟି ସ୍ୱାଧୀନତା ଆନ୍ଦୋଳନର ପୀଠସ୍ଥାନରେ ପରିଣତ ହୋଇ **ସ୍ୱରାଜ୍ୟ-ଆଶ୍ରମ** ନାମରେ ନାମିତ ହୋଇଅଛି ।



ଗୋକୁଳାନନ୍ଦ ଚୌଧୁରୀ

ଗୋକୁଳାନନ୍ଦ ଚୌଧୁରୀଙ୍କର ଚାରୋଟି ପୁତ୍ର ସନ୍ତାନ ବାହୁଡ଼ି ଯିବା ପରେ ଦୀର୍ଘଜୀବୀ ପୁତ୍ର ସନ୍ତାନ ଲାଭ ମାନସରେ ଭାଗବତ ଗାଦୀ ସ୍ଥାପନ କରି ତାଙ୍କର ସ୍ତ୍ରୀ **ପଦ୍ମାବତୀ ଦେବୀ**



ପଦ୍ମାବତୀଦେବୀ (୧୮୬୯ - ୧୯୫୫)

ମାନସିକ କଲେ ଯେ ମୋର ପୁତ୍ରସନ୍ତାନ ହେଲେ ସେହି ସନ୍ତାନ ଜୀବିତ ରହିଲେ ମୁଁ ତାକୁ ଯୋଗୀ କରିଦେବି । ଦୀର୍ଘାୟୁ ପୁତ୍ର ସନ୍ତାନ ପାଇବା ପାଇଁ ଯେତେ ପ୍ରକାର ଓଷାବ୍ରତ କରିବାର ବିଧିବିଧାନ ଓଡ଼ିଶାରେ ଅଛି ସେ ସବୁ ଓଷାବ୍ରତ ପଦ୍ମାବତୀ ଦେବୀଙ୍କର ନିତ୍ୟଧର୍ମରେ ପରିଣତ ହେଲା । ଗୋକୁଳାନନ୍ଦ ଚୌଧୁରୀ ମଧ୍ୟ ପୁତ୍ରଶୋକରେ ବ୍ୟାକୁଳ ହୋଇ ନିଜର ରାଜସିକ ଭୋଗବିଳାସ ଛାଡ଼ି କିଛିଦିନ ଚରଣଦାସ ବାବାଜୀଙ୍କ ସହିତ କାଳାତିପାତ କରିଥିଲେ ବୋଲି ଶୁଣାଯାଏ ।

ଗୋକୁଳାନନ୍ଦ ଚୌଧୁରୀ ଜାତୀୟ ଗୌରବ **ମଧୁସୂଦନ ଦାସ**ଙ୍କ ସାନ୍ନିଧ ଲାଭ କରିବା ହେତୁ ତାଙ୍କ ମଧ୍ୟରେ ରାଜନୈତିକ ଚେତନା ଜାଗ୍ରତ ହୋଇଥିଲା ।



ଜାତୀୟ ଗୌରବ ମଧୁସୂଦନ (୧୮୪୮ - ୧୯୩୪)

ୟଙ୍ଗ ଉତ୍କଳସ୍ ଆସୋସିଏସନ୍, ଉତ୍କଳ ସମ୍ମିଳନୀ ଆଦି ସଂଗଠନର ସେ ଜଣେ ଉତ୍ସାହୀ କର୍ମକର୍ତ୍ତା ଥିଲେ । କରଣ ଜାତିର ଟେକ ରଖିବା ପାଇଁ କରଣ ସଭା ଗଢ଼ିବାରେ ମଧ ସେ ଥିଲେ ଅଗ୍ରଣୀ । ସେ ବିହାର ଓଡ଼ିଶା ବିଧାନସଭାର ସଦସ୍ୟ ମଧ୍ୟ ହୋଇଥିଲେ ।

ଏ ପ୍ରକାର ବାୟୁମଣ୍ଡଳରେ ବଢ଼ିବା ହେତୁ ଗୋପବଂଧୁଙ୍କ ମଧ୍ୟରେ ପିଲାଦିନରୁ ରାଜନୈତିକ ଚେତନା ଜାଗ୍ରତ ହେବାଟା ହିଁ ସ୍ୱାଭାବିକ ଥିଲା । ପୁଣି ଗୋକୁଳାନନ୍ଦ ନିଜେ ନାନା ଉପାୟରେ ତାଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରାଉଥିଲେ । ଗୋପବନ୍ଧୁଙ୍କ ମୁହଁରୁ ଶୁଣିବା କଥା- ୧୯୦୫ରେ ରୁଷ-ଯାପାନ ଯୁଦ୍ଧ ଲାଗିଥିବା ବେଳେ ଗୋକୁଳାନନ୍ଦ ଦଶ ବର୍ଷ ବୟସ୍କ ଗୋପବନ୍ଧୁଙ୍କୁ ବଡ଼ପାଟିରେ ଇଂରାଜୀ ଖବର କାଗଜ ପଢ଼ିବା ପାଇଁ ବରାଦ କରୁଥିଲେ ଏବଂ ସେ ଯୁଦ୍ଧର ବୀର ସେନାପତି ଜେନେରାଲ କୁରୋପାଟ୍‌କିନ୍, ଜେନେରାଲ ରୁଷୋ ଆଦିଙ୍କର ଦେଶପ୍ରେମ ଓ ସାହସର ପ୍ରଶଂସା କରୁଥିଲେ । ସେ ସବୁ ବୀରତ୍ୱ କାହାଣୀ କିଶୋର ଗୋପବନ୍ଧୁଙ୍କ ଜୀବନକୁ ପ୍ରଭାବିତ କରୁଥିଲା ।

ଗୋପବନ୍ଧୁ ପଦ୍ମାବତୀ ଦେବୀଙ୍କର ନୟନର ମଣି ଥିଲେ । ସେଥିପାଇଁ ପିଲାଦିନୁଁ ଅନେକ କଥାରେ ତାଙ୍କୁ ପ୍ରଶ୍ରୟ ଦିଆ ଯାଉ ଥିଲା । ସେ ଯାହା ଜିଦ୍ କରୁଥିଲେ ସେ ଜିଦ୍ ଭାଂଗିବା କାହାରି ସାଧ୍ୟ ନ ଥିଲା ।।


Gopalaballabh Das (Ramadevi's Father)

ଗୋପାଳ ବଲ୍ଲଭ ଦାସ

ସେଥିପାଇଁ ଚାରିବର୍ଷରେ ତାଙ୍କର ବିଦ୍ୟାରମ୍ଭ ନ ହୋଇ ଆଠ ବର୍ଷ ବୟସରେ ମାଆ ପଣତ ଗୁଠେଇ ସେ ଗୃହଶିକ୍ଷକଙ୍କ ନିକଟକୁ ପାଠ ପଢ଼ିବାକୁ ଗଲେ ଏବଂ ବାରବର୍ଷ ଆଠମାସ ବୟସରେ ମ୍ୟାଟ୍ରିକୁଲେଶନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଛାତ୍ରବୃତ୍ତି ପାଇଲେ, ଏହା ଛଡ଼ା ସେ ସ୍ୱାନ୍ତଃସୁଖାୟ ସଂସ୍କୃତରେ କାବ୍ୟ ପ୍ରଥମ ଓ କାବ୍ୟ ଦ୍ୱିତୀୟ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ । ଗୋପବଂଧୁ ୧୯୧୪ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ **ଗଣିତ ଶାସ୍ତ୍ର**ରେ ଏମ୍.ଏ. ପାସ୍ କଲେ । ସେହିବର୍ଷ **ଗୋପାଳ ବଲ୍ଲଭ ଦାସ** ଓ **ବସନ୍ତ କୁମାରୀ ଦେବୀ**ଙ୍କ ଦ୍ୱିତୀୟା କନ୍ୟା **ରମା ଦେବୀ**ଙ୍କ ସହ ତାଙ୍କର ବିବାହ ଅନୁଷ୍ଠିତ ହେଲା । ସିଭିଲ୍ ସର୍ଭିସ୍ ପରୀକ୍ଷା ଦେବାପାଇଁ ସେ ବିଲାତ ଯିବାକୁ ଆୟୋଜନ ଚାଲିଥିବା ବେଳେ ୧୯୧୫ ମସିହା ଫେବୃଆରୀ ମାସରେ ଗୋକୁଳାନନ୍ଦ ବାବୁଙ୍କ ଦେହାନ୍ତ ହେଲା । ଫଳରେ ଗୋପବଂଧୁଙ୍କର ବିଲାତ ଯିବା ସ୍ଥଗିତ ହେଲା । ସେ ଆଇନ୍ ପଢ଼ିବା ପାଇଁ କଲିକତା ଗଲେ । ପ୍ରଥମ ବର୍ଷ **ଆଇନ୍ ପରୀକ୍ଷା**ରେ ସେ କଲିକତା ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କଲେ । ମାତ୍ର ପାରିବାରିକ ଦାୟିତ୍ୱ ବହନ କରିବା ଦୃଷ୍ଟିରୁ ଅନନ୍ୟୋପାୟ ହୋଇ ତାଙ୍କୁ ଆଇନ୍ ପାଠ ଅସମାପ୍ତ ରଖି ଡ଼େପୁଟି ମ୍ୟାଜିଷ୍ଟ୍ରେଟ୍ ଚାକିରୀରେ ପଶିବାକୁ ପଡ଼ିଲା ।


Basanta Kumari Das (Ramadevi's Mother)

ବସନ୍ତ କୁମାରୀ ଦେବୀ



ରମାଦେବୀ

ଯାଜପୁରରେ ସେକେଣ୍ଡ ଅଫିସର ଥିବା ବେଳେ ବିଂଝାରପୁର ଅଂଚଳର ବନ୍ୟାଗ୍ରସ୍ତ ଅଂଚଳରେ ରିଲିଫ ବାଣ୍ଟିବା ଓ ବନ୍ୟାର କ୍ଷୟକ୍ଷତିର ପରିମାଣ ସରକାରକୁ ଜଣାଇବା ଦାୟିତ୍ୱ ତାଙ୍କୁ ଦିଆଗଲା । ତାଙ୍କର ପ୍ରତ୍ୟକ୍ଷ ଅନୁଭୂତିର ବିବରଣୀକୁ ପଢ଼ି ତାଙ୍କ ଉପରିସ୍ଥ କର୍ତ୍ତା ଯାଜପୁରର ଏସ୍.ଡି.ଓ. ଶ୍ରୀ ଦୟାନିଧି ଦାସ କ୍ଷୟକ୍ଷତିର ପରିମାଣ କମାଇ ବିବରଣୀ ପ୍ରସ୍ତୁତ କରିବାକୁ ଆଦେଶ ଦେଲେ । ମାତ୍ର ଗୋପବଂଧୁ ମିଥ୍ୟାର ଆଶ୍ରୟ ନେବାକୁ ରାଜି ହେଲେ ନାହିଁ ବରଂ କାର୍ଯ୍ୟରୁ ଇସ୍ତଫା ଦେବାକୁ ସେ ପ୍ରସ୍ତୁତ ଅଛନ୍ତି ବୋଲି କଟକ ଜିଲ୍ଲାପାଳ ବିସ୍କୋ ସାହେବଙ୍କୁ ଜଣାଇଲେ । ଗୋରା ଜିଲ୍ଲାପାଳ ଭାବପ୍ରବଣ ଯୁବକ ଗୋପବଂଧୁଙ୍କ ମନ ବହଲାଇ ଦେବା ଉଦ୍ଦେଶ୍ୟରେ ତାଙ୍କୁ ବରଗଡ଼ ବଦଳି କରିଦେଲେ । ବରଗଡ଼ ବଦଳି ହେବା ପରେ ମଧ୍ୟ ସତ୍ୟାନୁସନ୍ଧିତ୍ସୁର ଚାକିରୀ କରିବା ଉଚିତ କି ନାହିଁ ଏ ବିଷୟରେ ଗୋପବନ୍ଧୁଙ୍କର ମନୋମନ୍ଥନ ଆରମ୍ଭ ହେଲା । ସେ ତାଙ୍କର ସ୍ତ୍ରୀ ରମାଦେବୀ ଓ କେତେକ ଗୁରୁଜନଙ୍କୁ ଏ ବିଷୟରେ ସେମାନଙ୍କର ମତାମତ ମାଗିଲେ । ରମାଦେବୀ ଆଜନ୍ମରୁ ଜାତୀୟ ଗୌରବ ମଧୁସୁଦନଙ୍କ ସ୍ୱାଧୀନ ଚିନ୍ତାଧାରା ମଧ୍ୟରେ ଲାଳିତ ପାଳିତ ହୋଇ ଥିବାରୁ ସ୍ୱାମୀଙ୍କୁ ତାଙ୍କର ବିବେକାନୁମୋଦିତ ପନ୍ଥା ଗ୍ରହଣ କରିବାକୁ ପରାମର୍ଶ ଦେଲେ । ଗୁରୁଜନ ମାନଙ୍କ ପରାମର୍ଶରେ ଦ୍ୱିମତ ରହିଲା ।

୧୯୨୧ ଫେବୃୟାରୀ ୨୧ ତାରିଖ ପିତୃଶ୍ରାଦ୍ଧ ଦିନ ଗୋପବନ୍ଧୁ ସରକାରୀ ଚାକିରୀରୁ ଇସ୍ତଫା ଦେଲେ । ତାଙ୍କ ସାନଭାଇ ନବକୃଷ୍ଣ ତାହା ପୂର୍ବରୁ ରେଭେନ୍ସା କଲେଜରେ B.A. କ୍ଲାସ୍‌ରୁ ଇସ୍ତଫା ଦେଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ନିଷ୍ପତ୍ତି କରି ସାରି ଥାନ୍ତି । ଗୋପବାବୁ ଚାକିରୀରୁ ଇସ୍ତଫା ଦେବାର କିଛିଦିନ ପରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ତାଙ୍କର ସତୀର୍ଥ ଶ୍ରୀ **ସୁରେଶ ଚନ୍ଦ୍ର ବୋଷ** ( ନେତାଜୀ ସୁଭାଷଙ୍କ ଅଗ୍ରଜ) ମଧ୍ୟ ଏହି ସମୟରେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଚାକିରୀରୁ ଇସ୍ତଫା ଦେଇ ଥିଲେ । ଫଳରେ ଦୁଇ ପରିବାର ମଧ୍ୟରେ ଥିବା ପରିଚୟ ଘନିଷ୍ଠତର ହୋଇଥିଲା । **ସୁଭାଷ** ଗୋପବନ୍ଧୁଙ୍କୁ ବରାବର ଗୋପବନ୍ଧୁଦାଦା ସମ୍ବୋଧନ




ବିଚାରପତି
ସୁରେଶଚନ୍ଦ୍ର ବୋଷ

କରୁଥିଲେ ।

ସରକାରୀ ଶିକ୍ଷାନୁଷ୍ଠାନ ବର୍ଜନ ଓ ଜାତୀୟ ବିଦ୍ୟାପୀଠ ସଂସ୍ଥାପନ ଅସହଯୋଗ ଆନ୍ଦୋଳନ କାର୍ଯ୍ୟକ୍ରମର ଅନ୍ତର୍ଗତ ଥିଲା । ତେଣୁ ସ୍କୁଲ୍ କଲେଜ ଛାଡ଼ି ଆସିଥିବା ଶତାଧିକ ଛାତ୍ରଙ୍କୁ ଘେନି ଜଗତ୍‌ସିଂହପୁରର ଅଳକା ନଦୀ କୂଳରେ ୧୯୨୧ ମସିହାରେ **ଅଳକାଶ୍ରମ** ନାମକ ଜାତୀୟ ଶିକ୍ଷା ଅନୁଷ୍ଠାନ ସ୍ଥାପିତ ହେଲା ।


ପ୍ରାଣକୃଷ୍ଣ ପଡ଼ିଆରୀ

**ଭାଗୀରଥି ମହାପାତ୍ର** ସେହି ସମୟରେ ଓକିଲାତି ଓ ପଣ୍ଡିତ **ପ୍ରାଣକୃଷ୍ଣ ପଡ଼ିହାରୀ** ଶିକ୍ଷକତା ତ୍ୟାଗକରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ଦୁହିଁଙ୍କ ସହିତ ଗୋପବନ୍ଧୁ ଏବଂ **ବାବା ରାମଦାସ** ମଧ୍ୟ ଆଠଗଡ଼ରୁ ଆସି ଅଳକାଶ୍ରମ ପରିଚାଳନାରେ ଲାଗିପଡ଼ିଲେ । ସର୍ବଶ୍ରୀ **ଉଦୟନାଥ ଷଡ଼ଂଗୀ** (ସମାଜ), **ରାମକୃଷ୍ଣ ନନ୍ଦ** (ପାରିଜାତ ପ୍ରେସ୍), **ବିଶ୍ୱନାଥ ନନ୍ଦ** (ଓକିଲ), **ଗୋକୁଳାନନ୍ଦ ମହାନ୍ତି** (କୁଆଁସ), **ନୀଳମଣି ପ୍ରଧାନ** (ବାହାରଣା), **ନବକୃଷ୍ଣ ଚୌଧୁରୀ** (ଖେରସ), **କିଶୋରୀ ମୋହନ କାନୁନଗୋ, ବିଶ୍ୱନାଥ ପରିଡ଼ା, ନଦିଆବିହାରୀ ମହାନ୍ତି, ଫକୀର ସାହୁ, କୈଳାସ ଚନ୍ଦ୍ର ମହାନ୍ତି** ଆଦି ଏହି ଅଳକାଶ୍ରମର ଅନ୍ତେବସୀ ଥିଲେ ।


ଭାଗୀରଥି ମହାପାତ୍ର


ଉଦୟନାଥ ଷଡ଼ଙ୍ଗୀ


ରାମକୃଷ୍ଣ ନନ୍ଦ


ଗୋକୁଳାନନ୍ଦ ମହାନ୍ତି

୧୯୨୦ର କଂଗ୍ରେସ ଅଧିବେଶନରେ ରାଷ୍ଟ୍ରୀୟ କାର୍ଯ୍ୟକ୍ରମ ମଧ୍ୟରେ ଅରଟ ଓ ହାତରେ ସୂତାକଟା ସ୍ଥାନ ପାଇଲା । ୧୯୨୧ର କାର୍ଯ୍ୟକ୍ରମରେ ବିଦେଶୀ ବର୍ଜନ ଓ ସ୍ୱଦେଶୀ ପରିଧାନ ଏକ ବିଶେଷ ଅଂଗ ଥିବା ହେତୁ ଅଳକାଶ୍ରମରେ ପାଠପଢ଼ା ସାଂଗକୁ ସୂତାକଟା ଲୁଗାବୁଣା ମଧ୍ୟ ଶିକ୍ଷା ଦିଆଗଲା । ଏହା ଛଡ଼ା ଶିକ୍ଷକ ଓ ଛାତ୍ରମାନେ ଗାଁରେ ରୋଗୀସେବା ଓ ହଇଜା, ବସନ୍ତ ଆଦି ବାବଦରେ ଥିବା କୁସଂସ୍କାରକୁ ଦୂର କରିବା କାମ ମଧ୍ୟ କରୁଥିଲେ । ଏହି ସମୟରେ ଆଶ୍ରମପରିଚାଳନା ଓ ସ୍ୱରାଜ୍ୟ ବାର୍ତ୍ତା ପ୍ରଚାର ସହିତ ଗାଁ ଲୋକଙ୍କୁ ହୋମିଓପ୍ୟାଥୀ ଚିକିତ୍ସା ଶିଖାଇବା କାମ କଲେ । ଦେଶବାସୀଙ୍କୁ ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ ଏକ କୋଟି ଟଙ୍କା ସଂଗ୍ରହ କରିବାକୁ ଭାରତରେ ୨୦ ଲକ୍ଷ ଅରଟ ଚଳାଇବାକୁ ଡାକରା ଦିଆଗଲା ।


ନୀଳମଣି ପ୍ରଧାନ

୧୯୨୨ର କଂଗ୍ରେସର ପ୍ରସ୍ତାବ ଅନୁସାରେ ଗୋଟିଏ ଖଦୀ ବିଭାଗ ସୃଷ୍ଟି ହେଲା ଏବଂ ୧୯୨୨ର କାକିନାଡ଼ା କଂଗ୍ରେସ ଅଧିବେଶନରେ ଖଦୀ ବୋର୍ଡ଼ ନାମକ ସଂସ୍ଥା ଗଠିତ ହେଲା । ଗୋପବାବୁ ଏହି ଖଦୀ ବୋର୍ଡ଼ର ଓଡ଼ିଶା ଶାଖାର ସଂପାଦକ ନିର୍ବାଚିତ ହୋଇଥିଲେ । ସେହି ସମୟରୁ ସେ ସରକାରୀ କଳ ଓ ଧନୀ କାରଖାନାର ମାଲିକଙ୍କ ଶୋଷଣରୁ ଅହିଂସାତ୍ମକ ଉପାୟରେ ଗ୍ରାମଗୁଡ଼ିକୁ ରକ୍ଷା କରିବାରେ ଖଦୀ ଓ ଖଦୀ-ବିଚାର ଗୋଟିଏ ପ୍ରଧାନ ଉପାୟ ବୋଲି ଉପଲବ୍ଧି କରି ଖଦୀ କାମରେ ମନୋନିବେଶ କଲେ ।

ସେ ନିଜେ ଓ ପରିବାରରେ ସମସ୍ତେ ସୂତା କାଟିଲେ । ନିଜ ଘରେ ଲୁଗା ବୁଣା ତନ୍ତ ପକାଇ ସେ ଲୁଗା ବୁଣିଲେ । ଖଦୀ ସଂଘ ନାମକ ଅନୁଷ୍ଠାନ ଗଠନ କରି ଅଳକାଶ୍ରମର ଆଖପାଖ ଗାଁରେ ସୂତାକଟା, ଲୁଗା ବୁଣା ଆଦିର ପ୍ରସାର କାମରେ ଲାଗିଲେ । ୧୯୨୫ରେ ଏହି ଖଦୀ ବୋର୍ଡ଼ ସଂସ୍ଥା ନିଖିଳ ଭାରତ ଚରଖା ସଂଘରେ ବିସର୍ଜିତ ହେଲା ଏବଂ ତିଳକ ସ୍ୱରାଜ୍ୟ ପାଣ୍ଠି ନିମନ୍ତେ ସଂଗୃତ ସମୁଦାୟ ଅର୍ଥ ଭାରତରେ ଖଦୀ କାମର ପ୍ରସାରରେ ବ୍ୟୟ କରାଯିବା ପାଇଁ ନିଖିଳ ଭାରତ କଂଗ୍ରେସ କମିଟି ନିଷ୍ପତ୍ତି କଲେ ।




ନବକୃଷ୍ଣ ଚୌଧୁରୀ



ସତୀଶ ଚନ୍ଦ୍ର ଦାସଗୁପ୍ତ



ବିଶ୍ୱନାଥ ପରିଡ଼ା

୧୯୨୪ ଡିସେମ୍ବର ମାସରେ ବେଲଗାଓଁ କଂଗ୍ରେସରେ ସ୍ୱରାଜ୍ୟ ବାଦୀ ମାନଙ୍କୁ (Swarajya Party) ସମର୍ଥନ କରି ପ୍ରସ୍ତାବ ଗୃହିତ ହେଲା । ତେଣୁ କଂଗ୍ରେସୀମାନେ ଆସେମ୍ବ୍ଲି, କାଉନ୍ସିଲ, ଡିଷ୍ଟ୍ରିକ୍ଟ ବୋର୍ଡ଼ର ସଦସ୍ୟତା ପାଇଁ ପ୍ରାର୍ଥୀ ହେବା ସ୍ଥିର ହେଲା । ଗୋପବନ୍ଧୁ ଡିଷ୍ଟ୍ରିକ୍ଟ ବୋର୍ଡ଼ର ସଦସ୍ୟ ପଦ ପାଇଁ ଏରସମାରୁ ପ୍ରାର୍ଥୀ ହେଲେ । ତାଙ୍କର ମଳାଶୁର ରାଜକିଶୋର ଦାସ ତାଙ୍କର ପ୍ରତିଦ୍ୱନ୍ଦିତା କଲେ । ଗୋପବଂଧୁ ନିର୍ବାଚିତ ହେବା ପରେ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ୍ ହେଲେ । ତାଙ୍କ କାର୍ଯ୍ୟକାଳ ସମୟରେ ଅଧିକ ସ୍କୁଲ୍ ଖୋଲିବା, ଶ୍ରୀ **ସତୀଶ ଚନ୍ଦ୍ର ଦାସଗୁପ୍ତ**ଙ୍କ ସହଯୋଗରେ ପିଲାଙ୍କ ପାଇଁ ଛୋଟ ଛୋଟ କାଠ ଅରଟ ତିଆରୀ କରାଇ ସ୍କୁଲ୍ ମାନଙ୍କରେ ସୂତାକଟା ଚଳାଇବା, କୂଅ ଖୋଳାଇବା ଉପରେ ସେ ଗୁରୁତ୍ୱ ଦେଉଥିଲେ ଏବଂ ସାଇକ୍ଲରେ ଚଢ଼ି ଗସ୍ତ କରୁଥିବା ହେତୁ ବୋର୍ଡ଼ ପକ୍ଷରୁ ନିର୍ଦ୍ଦିଷ୍ଟ ଗସ୍ତ ଖର୍ଚ୍ଚରୁ ବହୁତ କମ ଗସ୍ତ ଖର୍ଚ୍ଚ ନେଉଥିଲେ ।

୧୯୨୭ରେ ତାଙ୍କର ଅନୁଜ ନବକୃଷ୍ଣ ଅନ୍ୟ ପ୍ରଦେଶର ବ୍ରାହ୍ମଧର୍ମାଲମ୍ବୀ ପରିବାରର କନ୍ୟା ଶ୍ରୀମତୀ **ମାଳତୀ ଦେବୀ**ଙ୍କୁ ବିବାହ କରିବାକୁ ଚାହିଁଲେ ।



ମାଳତୀ ଦେବୀ



ନବକୃଷ୍ଣ ଓ ମାଳତୀ ଦେବୀ

କେତେକ ଗୁରୁଜନଙ୍କର ତୀବ୍ର ସକ୍ରିୟ ବିରୋଧସତ୍ତ୍ୱେ ଗୋପବାବୁ ଏହି ବିବାହକୁ ସମର୍ଥନ କରି ନିଜେ ଉପସ୍ଥିତ ରହି ବିବାହ ସଂପନ୍ନ କରାଇଲେ ।

ଗୋପବନ୍ଧୁଙ୍କର ତିନୋଟି ସନ୍ତାନ ମଧ୍ୟରୁ **ମନମୋହନ** ୧୯୧୫ ଅକ୍ଟୋବର ୧୧, **ଅନ୍ନପୂର୍ଣ୍ଣା** ୧୯୧୭ ନଭେମ୍ବର ୩, **ବିରଜା ପ୍ରସାଦ** ୧୯୨୦ରେ ଜନ୍ମ ଗ୍ରହଣ କରିଥିଲେ । ୧୯୨୧ ରେ ଗୋପବାବୁ ଗଂଜାମରେ କଂଗ୍ରେସ କାମରେ ବ୍ୟସ୍ତ ଥିବା ବେଳେ ବିରଜା ପ୍ରସାଦ ବ୍ୟାସିଲାରୀ ଡିସେଣ୍ଟ୍ରୀ ରୋଗରେ ମୃତ୍ୟୁ ହେଲା । ଏହି ସନ୍ତାନ ବିୟୋଗ ଫଳରେ ଚଉଧୁରୀ ଦମ୍ପତିଙ୍କ ମନରେ ତୀବ୍ର ବୈରାଗ୍ୟ ଜନ୍ମିଲା । ଦେଶକାମରେ ବ୍ରତୀ ହେବା ପାଇଁ ଦୁହେଁ ସଙ୍କଳ୍ପ କରିଥିବାରୁ ଏହି ଦେଶସେବା ପଥରେ ପରିବାର ସଂଖ୍ୟା ବୃଦ୍ଧି ସ୍ପୃହଣୀୟ ନୁହେଁ ବୋଲି ଈଶ୍ୱର ବିରଜାକୁ ବାହୁଡ଼ାଇ ନେଲେ ବୋଲି ଦୁହିଁଙ୍କର ଧାରଣା ହେଲା । ତେଣୁ ଆଉ ପରିବାର ସଂଖ୍ୟା ନ ବଢ଼ାଇବା ପାଇଁ ସନ୍ତାନ ଶୋକ ବିହ୍ୱଳ ଦଂପତି ବଦ୍ଧ ପରିକର ହେଲେ । ଏହି ସମୟରେ ଗୋପବନ୍ଧୁ ପାହାନ୍ତାରୁ ଉଠି ରମାଦେବୀଙ୍କୁ ଏକାନ୍ତରେ ଗାନ୍ଧୀ ସାହିତ୍ୟ ପଢ଼ି ସରଳ ଭାଷାରେ ବୁଝାଉଥିବା ଦୃଶ୍ୟ ଦେଖିବକୁ ମିଳୁ ଥିଲା । ଗାନ୍ଧୀ ଅନୁମୋଦିତ ପନ୍ଥାରେ ବାହ୍ୟ ଆଚରଣ ସାଂଗକୁ ଆନ୍ତରିକ ଆଚରଣର ପ୍ରୟାସ ଏହି ସନ୍ତାନ ମୃତ୍ୟୁ ପରେ ଆରମ୍ଭ ହେଲା । କବି ଯଥାର୍ଥରେ କହିଛନ୍ତି

"ଶୋକର ଅସୀମ ମସୀମୟ ଅନ୍ଧକାରେ
ପ୍ରେମର ପ୍ରଦୀପ ଜାଳି ମର୍ମ ବେଦନାରେ
ଯେ ଜନ ଜପଇ ଶିବ-ରାତ୍ରି ଜାଗରଣେ
ଅଶ୍ରୁପ୍ଲୁତ ପ୍ରେମମନ୍ତ୍ରେ ହୃଦୟ ରତନ
ସେହି ଏକା ଏ ଜଗତେ ମହା ଧନେ ଧନୀ
ଅକ୍ଷୟ ଭଣ୍ଡାର ତାର ଦିବସ ରଜନୀ"

ଡିଷ୍ଟ୍ରିକ୍ଟ ବୋର୍ଡ଼ ଚେୟାରମ୍ୟାନ ରହିବା କାର୍ଯ୍ୟକାଳ ପୂରିଯିବା ପରେ ଗୋପବାବୁ ଗ୍ରାମ ସଂଗଠନ କାମରେ ଅଧିକ ସମୟ ଦେବାକୁ ଲାଗିଲେ । ଜଗତ୍‌ସିଂହପୁରର ରଣହତା, ଯଶୋବନ୍ତପୁର ଆଦି କେତୋଟି ଗ୍ରାମରେ ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିଆରୀ, ଶ୍ରୀ ସତୀଶ ଚଂଦ୍ର ଦାସଗୁପ୍ତ ଆଦିଙ୍କ ସହଯୋଗରେ ସେ ଗ୍ରାମ ସଂଗଠନ ଚଳାଇଲେ । ୧୯୨୮ କୁ ଅଳକାଶ୍ରମର ଅନ୍ତେବାସୀମାନେ ବିଭିନ୍ନ ସଂସ୍ଥାରେ ପଢ଼ିବାକୁ ଓ କାମକରିବାକୁ ଚାଲି ଯାଇଥିବାରୁ ଅଳକାଶ୍ରମ କେବଳ ଖଦୀ ସଂଘର ଏକ ଖଦୀ ଉତ୍ପାଦନ କେନ୍ଦ୍ର ହୋଇ ରହି ଥିଲା । ଗୋପବାବୁ ଗ୍ରାମ୍ୟ ଜୀବନ କଟାଇବା ମାନସରେ

ନିଜର ବୃଦ୍ଧା ମାଆଙ୍କ ସମେତ ସପରିବାରେ ଅଳକାଶ୍ରମରେ ରହିଲେ ।

୧୯୨୮ ମସିହରେ **ଉତ୍କଳମଣି ଗୋପବନ୍ଧୁ ଦାସ**ଙ୍କର ଦେହାନ୍ତ ହେଲା । ଦୁର୍ଭିକ୍ଷ ଗ୍ରସ୍ତ ଅଂଚଳରେ ସୂତା କଟାଇ ରିଲିଫ ଦେବା ଉଦ୍ଦେଶ୍ୟରେ ଦାସେ ଆପଣେ ୧୯୨୫ ମସିହାରେ ପୁରୀଜିଲ୍ଲା ଚରଖା ରିଲିଫ କମିଟି ନାମରେ ଏକ ଅନୁଷ୍ଠାନ ଗଠନ କରି ଥିଲେ । ଦାଶେ ଆପଣେଙ୍କ ଅନ୍ତେ ମହାତ୍ମା ଗାନ୍ଧୀ ଏହି ଅନୁଷ୍ଠାନର ନାମ **ଗୋପବଂଧୁ ଦରିଦ୍ର ନାରାୟଣ ସଂଘ** ଦେଲେ ଏବଂ ଅନୁଷ୍ଠାନର ପରିଚାଳନା ପାଇଁ ତିନି ହଜାର ଟଙ୍କା ଗୋପବଂଧୁ ଚଉଧୁରୀଙ୍କ ହାତରେ ଦେଲେ । ଗୋପବଂଧୁ ଚଉଧୁରୀ ଏହି ଗୋ. ଦ. ନା. ସେବାସଂଘର ପ୍ରଥମ ସଭାପତି ନିର୍ବାଚିତ ହେଲେ । ପୁରୀ ଜିଲ୍ଲାର ବେଗୁନିଆ, ବ୍ରହ୍ମଗିରି, ଗୋପ ଆଦି ଅଂଚଳରେ ଖଦୀ କାମ କ୍ରମେ ପ୍ରସାରଲାଭ କଲା ।

୧୯୨୯ର ଲାହୋର କଂଗ୍ରେସ ଅଧିବେଶନରେ ପୂର୍ଣ୍ଣସ୍ୱରାଜ୍ୟ ଦାବୀ କରି ପ୍ରସ୍ତାବ ଗୃହୀତ ହେଲା ଏବଂ ୧୯୩୦ ଜାନୁୟାରୀ ୨୬ ତାରିଖରେ ଭାରତର ପୁରପଲ୍ଲିରେ ସ୍ୱାଧୀନତା ଦିବସ ପାଳନ କରାଯାଇ ପୂର୍ଣ୍ଣସ୍ୱରାଜର ଶପଥ ପାଠ କରିବା ପାଇଁ କାର୍ଯ୍ୟକ୍ରମ ସ୍ଥିର ହେଲା ଏବଂ ଭାରତବର୍ଷରେ ସ୍ୱାଧୀନତା ସତ୍ୟାଗ୍ରହ ପାଇଁ ପରିଚାଳନା କରିବା ଦାୟିତ୍ୱ ମହାତ୍ମା ଗାନ୍ଧୀଙ୍କ ଉପରେ ନ୍ୟସ୍ତ କରାଗଲା । ଗୋପବଂଧୁ (ଚୌଧୁରୀ) ସେ ଦିନ କଟକର ବିରାଟ ଜନସମାବେଶରେ ଏହି ଶପଥ-ପତ୍ର ପାଠ କରିଥିଲେ ।



ଦାସେ ଆପଣେ



ଗୋପବନ୍ଧୁ ଚୌଧୁରୀଙ୍କ ଅଙ୍କା ଚିତ୍ର

ଓଡ଼ିଶାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ତା ୧୬ ।୩ । ୩୦ ରିଖର କାର୍ଯ୍ୟକାରୀ କମିଟି ବୈଠକରେ ସରକାରଙ୍କର ଏକଚାଟିଆ ଲବଣ କାରବାର ସମ୍ବନ୍ଧରେ ଆଲୋଚନା କରି ସିଦ୍ଧାନ୍ତ କଲେ ଯେ ସତ୍ୟାଗ୍ରହର ମାର୍ଗ ଦର୍ଶନ କରାଇବାକୁ, ଅଂଚଳ ବାଛିବାକୁ ଓ ଆଇନ୍ ଅମାନ୍ୟ ଆରମ୍ଭ କରିବାର ସମୟ ସ୍ଥିର କରିବାକୁ ଶ୍ରୀଯୁକ୍ତ ଗୋପବଂଧୁ ଚୌଧୁରୀଙ୍କୁ କ୍ଷମତା ଦିଆଗଲା (ଗାଂଧୀ ରଚନାବଳୀ ତୃତୀୟ ଖଣ୍ଡ ପୃଷ୍ଠା ୬୭୨) ।

ଜନସାଧାରଣ ସେ ପର୍ଯ୍ୟନ୍ତ ନିଶ୍ଚେଷ୍ଟ ନିରାଗ୍ରହୀ ଥିବାର ଜଣା ପଡୁଥିଲା । ଏହି କାର୍ଯ୍ୟକ୍ରମ ଲୋକଙ୍କ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ୨୦ । ୩ । ୩୦ ତାରିଖରେ କଟକ କାଠଜୋଡ଼ି ନଦୀବାଲିରେ ଏକ ସାଧାରଣ ସଭା ଆହୂତ ହେଲା । ସଭା ଆରମ୍ଭରୁ ଗୋପବନ୍ଧୁ ଚୌଧୁରୀ, **ପୂର୍ଣ୍ଣଚନ୍ଦ୍ର ବୋଷ** ପ୍ରମୁଖଙ୍କ ଉପରେ ୧୪୪ ମୁଖବନ୍ଦ ଧାରା ଜାରି କରାଗଲା । ଏ ଖବର ସହରରେ ବ୍ୟାପି ଗଲାରୁ ହଜାର ହଜାର ଲୋକ ସଭାରେ ଜମା ହେଲେ ।



ପୂର୍ଣ୍ଣଚନ୍ଦ୍ର ବୋଷ

ଗୋପବନ୍ଧୁ ଚୌଧୁରୀ ୧୪୪ ଧାରା ଅମାନ୍ୟ କରି ସଭାରେ ବକ୍ତୃତା ଦେଲେ । ତାଙ୍କ ପରେ ପୂର୍ଣ୍ଣଚନ୍ଦ୍ର ବୋଷ ମଧ୍ୟ ୧୪୪ ଧାରା ଅମାନ୍ୟ କଲେ । ଲୋକଙ୍କ ମଧ୍ୟରେ ଅଭୂତପୂର୍ବ ଉଦ୍ଦୀପନା ଦେଖା ଦେଲା । ସତେଇଶ ଜଣ ଉପସ୍ଥିତ ବ୍ୟକ୍ତି ସତ୍ୟାଗ୍ରହୀ ଶପଥ ପତ୍ରରେ ସ୍ୱାକ୍ଷର କଲେ । ଗୋପବନ୍ଧୁ ଚୌଧୁରୀଙ୍କୁ ଗିରଫ କରା ନ ଯାଇ ୮ । ୪ । ୩୦ ରେ ହାଜର ହେବା ପାଇଁ ତାଙ୍କ ଉପରେ ସାନି ସମନ ଜାରି ହେଲା ।

୬ । ୪ । ୩୦ ରେ

ଗୋପବଂଧୁ ଚୌଧୁରୀଙ୍କ ନେତୃତ୍ୱରେ ୨୦ ଜଣ ସତ୍ୟାଗ୍ରହୀ ଲବଣ ଆଇନ୍ ଅମାନ୍ୟ କରିବାକୁ ବାଲେଶ୍ୱର ଜିଲ୍ଲାର **ଇଂଚୁଡ଼ି** ଅଭିମୁଖେ ଚାଲି ଚାଲି ବାହାରିଲେ । ସେମାନେ ଯାଉଥିବା ଅଂଚଳରେ ସଭା କରି ଲୋକଙ୍କୁ



ଚୌଧୁରୀଘରର ଏକ ଅଂଶ



୧୯୩୦ ମସିହାରେ ପ୍ରଥମ ସ୍ୱରାଜ ଆଶ୍ରମ ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀଙ୍କ ବାସଭବନରେ ଲବଣ ସତ୍ୟାଗ୍ରହୀମାନଙ୍କୁ ମା' ରମାଦେବୀ ବିଦାୟ ଦେଉଛନ୍ତି ।

ଲବଣ ସତ୍ୟାଗ୍ରହ ଅନୁକୁଳ

ସତ୍ୟାଗ୍ରହର ମର୍ମ ବୁଝାଉଥିଲେ । ଫଳରେ ଲୋକଙ୍କ ମଧ୍ୟରେ ଉତ୍ସାହ ସଂଚାରିତ ହେଲା । ଶହ ଶହ ସ୍ତ୍ରୀଲୋକ ପର୍ଦ୍ଦା ଛାଡ଼ି ଆସି ଏହି ସତ୍ୟାଗ୍ରହୀଙ୍କୁ ସମ୍ବର୍ଦ୍ଧନା ଜଣାଇଲେ ।



ଲବଣ ସତ୍ୟାଗ୍ରହ ଯାତ୍ରା

୮।୪।୩୦ ରେ ଗୋପବାବୁ ହାଜର ନ ହେବାରୁ କୁସୁନପୁର ଠାରେ ତାଙ୍କୁ ଗିରଫ



ଲେଖିକା ଓ ଆଚାର୍ଯ୍ୟ ମହାଶୟ ୧୯୩୮

କରା ଗଲା । ତାଙ୍କର ମୂଳ ଯୋଜନା ଅନୁସାରେ **ଆଚାର୍ଯ୍ୟ ହରିହର ଦାସ**ଙ୍କ ନେତୃତ୍ୱରେ ସତ୍ୟାଗ୍ରହୀମାନେ ଇଂଚୁଡ଼ି ଯାଇ ଲବଣ ଆଇନ୍

ଅମାନ୍ୟ କରି ଗିରଫ ହେଲେ ଏବଂ ନାନା ନିର୍ଯ୍ୟାତନା ସହିଲେ । ଆଚାର୍ଯ୍ୟ ହରିହର ଦାସ ଗୋପବାବୁଙ୍କର ନିକଟତମ ସାଥୀ ଥିଲେ । ତାଙ୍କୁ ସେ ହରିଭାଇନା ସଂବୋଧନ କରୁଥିଲେ । ଆଚାର୍ଯ୍ୟ ହରିହର ମଧ୍ୟ ଅନୁଜପ୍ରତିମ ଗୋପବନ୍ଧୁଙ୍କର ସବୁ ଅଳିଝଳି ଅକୁଣ୍ଠ ଚିତ୍ତରେ ସହୁ ଥିଲେ ।

ଏ ଥରକ ଗୋପବନ୍ଧୁ ଚୌଧୁରୀଙ୍କୁ ଇଣ୍ଡିଆନ୍ ପେନାଲ୍ କୋଡ୍ ର ୧୮୮ ଦଫା ଅନୁସାରେ ପଚାଶ ଟଙ୍କା ଜୋରିମାନା, ଏକ ସପ୍ତାହ ଅଶ୍ରମ ଜେଲ୍ ଦଣ୍ଡ ମିଳିଲା । ଜୋରିମାନା ବାବଦକୁ ଅଳକାଶ୍ରମରୁ ତାଙ୍କ ଗାଈ କୋରଖ କରାଗଲା । ସେ ଅଂଚଳରେ କେହି ନିଲାମ ନ ଧରିଲାରୁ ଅନ୍ୟତ୍ର ଗାଈ ନେଇଯାଇ ନିଲାମ କରା ଗଲା । ଗୋପବାବୁ ୧୯ | ୪ | ୩୦ ତାରିଖରେ ଜେଲ୍‌ରୁ ଖଲାସ ହୋଇ ବାଲେଶ୍ୱରରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର କାର୍ଯ୍ୟକାରୀ କମିଟି ବୈଠକରେ ଯୋଗ ଦେବାକୁ ବାଲେଶ୍ୱର ଆସିଲେ । ଏହି ବୈଠକରେ ସମସ୍ତ ପରିସ୍ଥିତି ଅନୁଧ୍ୟାନ କରି ଗ୍ରାମବାସୀମାନଙ୍କୁ ଗଣ ଆଇନ୍ ଅମାନ୍ୟ କରିବା ପାଇଁ ଅନୁମତି ଦେବା ସିଦ୍ଧାନ୍ତ ହେଲା । ଏଥି ପାଇଁ ବଲେଶ୍ୱର ଜିଲ୍ଲାର ଉପକୂଳବର୍ତ୍ତୀ ଅଂଚଳର ବିଭିନ୍ନ ସ୍ଥାନରେ, କୋଳିଗାଁ, ରସାଳ ପୁର, ବୋଇତା, ସରଥା, କୁଆଁରପୁର, କସବା, ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଗୋପବନ୍ଧୁ ଚୌଧୁରୀଙ୍କୁ ପୁନର୍ବାର ଗିରଫ କରାଯାଇ ଇଣ୍ଡିଆନ୍ ପେନାଲ୍ କୋଡ୍ ର ୧୧୭ ଦଫା ଅନୁସାରେ


ନିବାରଣ ଚନ୍ଦ୍ର ଦାସଗୁପ୍ତ

ଦେଢ଼ ବର୍ଷ ଜେଲ୍ ଦଣ୍ଡ ଦିଆଗଲା । ବିହାର ଓଡ଼ିଶା ଏକତ୍ର ଥିବାରୁ ଏବଂ ଗୋପବାବୁ `କ' ଶ୍ରେଣୀଭୁକ୍ତ ହୋଇଥିବାରୁ ତାଙ୍କୁ ହଜାରିବାଗ ସେଣ୍ଟ୍ରାଲ୍ ଜେଲ୍ କୁ ପଠାଇ ଦିଆଗଲା ।

ହଜାରିବାଗ ଜେଲ୍ ରେ ଗୋପବାବୁଙ୍କର ବାବୁ ରାଜେନ୍ଦ୍ର ପ୍ରସାଦ, ନିବାରଣ ଚନ୍ଦ୍ର ଦାସଗୁପ୍ତ, ଆଚାର୍ଯ୍ୟ କୃପାଲାନୀ, ଖାନ୍ ଅବଦୁଲ୍ ଗଫୁର୍ ଖାନ୍, ରାଜା ଦୀପ ନାରାୟଣ ସିଂହ, ଶ୍ରୀକୃଷ୍ଣ ସିନ୍‌ହା ଆଦିଙ୍କ ସହିତ ଘନିଷ୍ଠତା ହେଲା । ଜେଲ୍ ରେ ଗୋପବାବୁ ଅରବିନ୍ଦଙ୍କ ଈଶାବାସ୍ୟ ଉପନିଶଦ, Essays on the Geeta, ରୋମାରୋଲାଁଙ୍କର Life and Gospel of Shri Rama Krishna, Mahatma Gandhi, ମୌଲାନା ଆବୁଲ୍ କାଲାମ ଆଜାଦଙ୍କର କୋରାନ୍ ସରୀଫ୍ ଆଦି ଅଧ୍ୟାତ୍ମ ସାହିତ୍ୟ ପାଠ କରିବାରେ ଅଧିକ ସମୟ ଦେଉଥିଲେ ଏବଂ ଗାନ୍ଧିଜୀଙ୍କ ସପ୍ତ ମହାବ୍ରତ, ଇନ୍ଦ୍ରିୟ ସଂଯମ ବନାମ ଇନ୍ଦ୍ରିୟ ଲାଳସା, ଗାଁ କଥା, ଆତ୍ମକଥା ବା ସତ୍ୟର ପ୍ରୟୋଗ ଆଦି ରଚନା ଗୁଡ଼ିକୁ ଓଡ଼ିଆରେ ଅନୁବାଦ କରୁଥିଲେ । ଜେଲ୍‌ରେ ଉର୍ଦ୍ଦୁଭାଷା ଲେଖିବା ପଢ଼ିବା ମଧ୍ୟ ସେ ଶିଖିଲେ ।

ତାଙ୍କୁ ସଶ୍ରମ କାରାଦଣ୍ଡ ମିଳି ଥିବାରୁ ସେ ଗାଲିଚା ବୁଣା ଶିଖି ଗାଲିଚା ବୁଣୁଥିଲେ । ଜେଲ୍‌ରେ ସୁନେଲି ରଂଗର ସୂତା ଦେଖି ସେ ଗାଲିଚାରେ ଗୋଟିଏ ସୁନା ହରିଣ ବୁଣି ତାହା ତଳେ

ଅସମ୍ଭବ ହେମ ମୃଗସ୍ୟ ଜନ୍ମ
ତଥାପି ରାମ ଲୁଲୁଭେ ମୃଗାୟ

ଶ୍ଳୋକଟି ବୁଣିବାରୁ ଗାଲିଚା ଶିକ୍ଷକ ସ୍ୱୀକାର କଲେ ଯେ ଗାଲିଚା ବୁଣାରେ ସେ ଶିକ୍ଷକଙ୍କୁ ଅତିକ୍ରମ କରି ଗଲେଣି । ସେ ଗାଲିଚାଟି ରାଜା ଦୀପନାରାୟଣ ସିଂହ ଜେଲ୍‌ରୁ ଖଲାସ ହେବା ବେଳେ କୀଣି ନେଇଥିଲେ ।

ଜେଲ୍‌ରେ ଗୋପବାବୁ ନିୟମିତ ଡାଏରୀ ଲେଖୁଥିଲେ । ଯେଉଁ ଜେଲ୍ ସାଥୀମାନେ ଦୀର୍ଘ କାରାବାସ ଯୋଗୁଁ ଅଧୀର ହୋଇ ପଡୁଥିଲେ ସେମାନଙ୍କ ପାଇଁ ସେ ନିଜ ଡାଏରୀରେ ବହୁତ କରି ଅଧୀରତାର କାରଣ ଦର୍ଶାଇଛନ୍ତି, ଦୁଃଖ ପ୍ରକାଶ କରିଛନ୍ତି । ମାନବ ସେବାର ବାସନା ଓ ଚିତ୍ତଶୁଦ୍ଧିର ସାଧନାରେ ସେ କିପରି ସବୁବେଳେ ବୁଡ଼ି ରହୁଥିଲେ ତାଙ୍କ ଡାଏରୀରୁ ତାଙ୍କର ସେହି ମନୋମନ୍ଥନର ପରିଚୟ ମିଳୁ ଥିଲା । ସେ ଜେଲ୍‌ରେ ଥିବା ବେଳେ ନଭେମ୍ବର ୮, ୧୯୩୦ ରେ ରମାଦେବୀ ଗିରଫ ହୋଇ ଆଠମାସ ଜେଲ୍ ଦଣ୍ଡ ପାଇ ଭାଗଲପୁର ସେଣ୍ଟ୍ରାଲ୍ ଜେଲ୍‌କୁ ପ୍ରେରିତ ହେଲେ । ଏହି ଖବରଟି ସେ ଜେଲ୍ ଭିତରେ ତାଙ୍କର ବିବାହ ତାରିଖରେ ପାଇଲେ ଏବଂ କିପରି ଆନନ୍ଦରେ ଅଭିଭୂତ ହୋଇଥିଲେ ତାହା ସେ ତାଙ୍କ ଡ଼ାଏରୀରେ ଲେଖିଛନ୍ତି । ତାଙ୍କର ଭାଇ ଓ ଭାଇବଧୂ ନବବାବୁ ଓ ମାଳତୀଦେବୀ ଏଥି ପୂର୍ବରୁ ଗିରଫ ହୋଇ ଜେଲ୍‌ରେ ବନ୍ଦୀ ଥିଲେ । ନଭେମ୍ବର ୧୬ ତାରିଖ ଜହର ଦିବସ ପାଳନ ଉପଲକ୍ଷେ ସାଧାରଣ ସଭାରେ କଟକରେ ପ୍ରଥମ ଲାଠିମାଡ଼ ହେଲା । ଗୋପବାବୁଙ୍କ ପୁଅ ମନମୋହନଙ୍କ ଅଣ୍ଟାରେ ଲାଠି ପାହାର ବସି ସେ ଆହତ ହେଲେ ।

ଯେତେବେଳେ ମୋତିଲାଲ ନେହେରୁ କମିଟି ଦେଶ ସ୍ୱାଧୀନତା ଲାଭ କରିବାକୁ ପ୍ରସ୍ତୁତ କି ନାହିଁ, ଅନୁସନ୍ଧାନ କରିବା ଉପଲକ୍ଷେ କଟକ ଆସିଥିଲେ, ସେତେବେଳେ ସ୍ୱରାଜ୍ୟ-ଆଶ୍ରମରେ ମୋତିଲାଲଜୀ ଗୋପବାବୁଙ୍କୁ ଜେରା କରିଥିଲେ - ତୁମ ସ୍ତ୍ରୀକୁ ଯଦି ସରାକାର ଜେଲ୍‌ରେ ଭରତି କରିଦେବ ତତ୍ ସତ୍ତ୍ୱେ ତମେ ଆନ୍ଦୋଳନରେ ଅହିଂସ ରହିବ? ଗୋପବାବୁ ହଁ ଭରିଥିଲେ । ମୋତିଲାଲଜୀ ପଚାରିଥିଲେ ତୁମର ସମୁଦାୟ ସଂପତ୍ତି ଯଦି ସରକାର କୋରଖ କରିନେବେ ତୁମେ ସେ କ୍ଷତି ବରଦାସ୍ତ କରିପାରିବ?

ଗୋପବାବୁ ସମ୍ମତିସୂଚକ ମୁଣ୍ଡ ହଲାଇଥିଲେ । ତୁମର ଏକମାତ୍ର ପୁଅ ଯେତେବେଳେ ପୁଲିଶର ଲାଠିମାଡ଼ ଖାଇବ ସେ ମୁହୂର୍ତ୍ତରେ ତୁମେ ବିଚଳିତ ହେବ ନାହିଁ ? ଗୋପବାବୁ ମୁଣ୍ଡ ହଲାଇଲେ । ମୋତିଲାଲଜୀ ABSURD କହି ମୁଣ୍ଡ ବୁଲାଇ ଦେଲେ । ଜାତୀୟ କବି **ବୀର କିଶୋର** ପ୍ରତ୍ୟକ୍ଷ ଦର୍ଶୀ ଭାବରେ ଅତୀତର ଏହି ସ୍ମୃତି ବଖାଣି ୧୬ ନଭେମ୍ବର ୧୯୩୦ ଦିନ କହିଲେ- "ଆହା, ଆଜି ମୋତିଲାଲଜୀ ଆସି ବୁଲୁ ଅଣ୍ଡାରେ ଏହି ଠେଙ୍ଗା ପାହାର ଦେଖନ୍ତେ କି!"


ଗୋପ ବାବୁ


ଜାତୀୟକବି ବୀରକିଶୋର

ଗାନ୍ଧୀ ଆରଉଇନ୍ ଚୁକ୍ତି ସ୍ୱାକ୍ଷରିତ ହେଲାରୁ ରାଜବନ୍ଦୀମାନଙ୍କୁ ମୁକ୍ତି ମିଳିଲା । ଗୋପବାବୁ କରାଚୀ କଂଗ୍ରେସ ଅଧିବେଶନରେ ଯୋଗ ଦେବା ପାଇଁ ସପରିବାରେ କରାଚୀ ଗଲେ । କରାଚୀରର ଖୋଲା ଅଧିବେଶନରେ ଆସନ୍ତା ବର୍ଷର କଂଗ୍ରେସ ଅଧିବେଶନ ଓଡ଼ିଶାରେ ହେବା ପାଇଁ


ସରଳା ଦେବୀ

ଶ୍ରୀମତୀ **ସରଳା ଦେବୀ** ପ୍ରସ୍ତାବ ଦେଲେ । ଗୋପବାବୁ ଏହି ପ୍ରସ୍ତାବକୁ ଅନୁମୋଦନ କଲେ । ଏହି ପ୍ରସ୍ତାବ ଗୃହୀତ ହେବାରୁ ଓଡ଼ିଶାରେ କଂଗ୍ରେସ ଅଧିବେଶନର ପୂର୍ବ ପ୍ରସ୍ତୁତି ଚାଲିଲା । ଅଭ୍ୟର୍ଥନା ସମିତି ଗଠନ କରିବା ପାଇଁ ସଭ୍ୟ ସଂଗ୍ରହ କରାଯାଇ ଅଭ୍ୟର୍ଥନା ସମିତି ଗଠିତ ହେଲା । ପଣ୍ଡିତ **ନୀଳକଣ୍ଠ ଦାସ**

ଏହି ସମିତିର ସଭାପତି, ଗୋପବନ୍ଧୁ ଚୌଧୁରୀ ସାଧାରଣ ସଂପାଦକ ଓ ଶ୍ରୀ **ଜଗନ୍ନାଥ ମିଶ୍ର** କୋଷାଧ୍ୟକ୍ଷ ନିର୍ବାଚିତ ହେଲେ । ପୁରୀ ବଳିଆ ପଣ୍ଡାରେ ପ୍ରତିନିଧି ନିବାସ ତିଆରୀ ସାଂଗକୁ ସ୍ୱେଚ୍ଛାସେବକ ଓ


ପଣ୍ଡିତ ନୀଳକଣ୍ଠ ଦାସ

ସ୍ୱେଚ୍ଛାସେବିକା ତାଲିମ ଶିବିର ସାରା ଓଡ଼ିଶାରେ ଚାଲିଲା । କଂଗ୍ରେସ ଅଧୀନସ୍ଥ ଅନୁଷ୍ଠାନ ହିନ୍ଦୁସ୍ତାନୀ ସେବାଦଳର ଶିକ୍ଷକ ଆସି ଏହି ତାଲୀମ ଶିବିର ଚଳାଇଲେ । ଅଖିଳ ଭାରତୀୟ ସ୍ତରର ଅତିଥିଙ୍କର ସମୁଚିତ ଆତିଥ୍ୟ କରିବା ପାଇଁ ସେମାନଙ୍କୁ ରାଷ୍ଟ୍ରଭାଷା ଶିକ୍ଷା ଦିଆ ଗଲା । ଓଡ଼ିଶାରେ ରାଷ୍ଟ୍ରଭାଷା ପ୍ରଚାର କାର୍ଯ୍ୟର ସୂତ୍ରପାତ ହେଲା । ଏହି କାର୍ଯ୍ୟରେ ଗୋପବନ୍ଧୁଙ୍କର ଯାହା ଅବଦାନ ରହିଛି ପଣ୍ଡିତ **ଅନସୂୟା ପ୍ରସାଦ ପାଠକ** ତାଙ୍କ ଉତ୍କଳ ପ୍ରବାସ ବହିରେ ଏବଂ ମହାତ୍ମା ଗାନ୍ଧୀ ନିଖିଳ ଭାରତ ହିନ୍ଦୀ ସମ୍ମିଳନୀରେ ନିଜର ଅଧ୍ୟକ୍ଷୀୟ ଅଭିଭାଷଣରେ ଉଲ୍ଲେଖ କରିଛନ୍ତି ।


ଅନସୂୟା ପ୍ରସାଦ ପାଠକ

ସେ କହିଛନ୍ତି - "उत्कलके बारेमें एक आशाजनक बात यह है कि श्री गोपबंधु चौधुरी और उनकी धर्मपत्नी रमादेवी हिन्दी प्रचारमें बहुत दिल्चप्सी लेते हैं । अपने परिवारको भी उह्वोने हिन्दीका काफी प्राप्त करादिया है । वे सब आजकल एक दहातमें रहते हुए ऐसी ही क्रियात्मक कर रहे हैं । ऐसे हि कुछ दूसरे अत्यासी कार्य्यकर्त्ता उत्कलमें हैं । इसलिये उत्कलमें हिन्दी प्रचारकी आशा अवश्य रखी जा सकती है । ( सम्पूर्ण गान्धी वाङ्मय खण्ड ६० ) ।"

ଏହି ସମୟରେ ଗୋପବାବୁ ଶୁଦ୍ଧ ସାହିତ୍ୟ ପ୍ରଚାର ସଂଘ ଗଠନ କରି ସପ୍ତ ମହାବ୍ରତ, ଗାଁ କଥା ଆଦି ଗାନ୍ଧୀଜୀଙ୍କ ଲିଖିତ ପୁସ୍ତକର ଓଡ଼ିଆ ଅନୁବାଦ ଛାପିଥିଲେ । ଶ୍ରୀ **ଗଦାଧର ଦତ୍ତ** ଥିଲେ ତାଙ୍କର ସହକାରୀ ।

ଗାଂଧୀଜୀ ଗୋଲ ଟେବୁଲ ବୈଠକରୁ ଫେରିବା ପରେ ବମ୍ବେରେ **ନିଖିଳ ଭାରତ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର** ବୈଠକ ବସିଲା । ଗୋପବାବୁ **ନିମନ୍ତ୍ରିତ** ଭାବରେ ଏହି ବୈଠକରେ ଯୋଗ ଦେଇଥିଲେ । ୧୯୩୨ ଜାନୁୟାରୀ ଚାରି ତାରିଖ ଦିନ ଗାନ୍ଧୀଜୀଙ୍କୁ ଗିରଫ କରାଗଲା । ଏହା ପରେ ପରେ ଗୋପବାବୁ ମଧ୍ୟ ଗିରଫ ହେଲେ । କଂଗ୍ରେସ ଅଧିବେଶନର ଆୟୋଜନ ଫସରଫାଟି ଗଲା । ସେ ଦଣ୍ଡିତ ହେବା ପରେ ତାଙ୍କୁ ହଜାରୀବାଗ ଜେଲକୁ ପଠାଗଲା । ଏ ଥରକ ତାଙ୍କର ବୃଦ୍ଧା ମାତାଙ୍କ ଛଡ଼ା ପରିବାରର ଆଉ ସମସ୍ତେ ଜେଲ୍ ଦଣ୍ଡ ପାଇ ହଜାରୀବାଗ, କଟକ, ବାଲେଶ୍ୱର, ପାଟନା କ୍ୟାଂପ୍ ଜେଲ୍‌ରେ


ଗଦାଧର ଦତ୍ତ

ଖେଳାଇ ହୋଇ ରହିଲେ ।





ଜେଲ୍ ଭିତରେ ପ୍ରିୟ ବାନରସେନାଗଣ
(ଫଟୋର ଇତିହାସ ବଡ଼ ବିଚିତ୍ର)

୧୯୩୨ ମସିହା ଶେଷଭାଗକୁ ଏକ ବର୍ଷ ସଶ୍ରମ ଜେଲଦଣ୍ଡ ଭୋଗକରି ଗୋପବାବୁ ଜେଲ୍‌ରୁ ମୁକୁଳି ହରିଜନ ସେବା କାର୍ଯ୍ୟକୁ ସଂଗଠିତ କରୁଥିବା ବେଳେ ପୁନର୍ବାର ଗିରଫ ହେଲେ । କିଛିଦିନ ପରେ ରମାଦେବୀ ଜେଲରୁ ଖଲାସ ହୋଇ ହରିଜନ ସେବକ ସଂଘ (ଉତ୍କଳ ଶାଖା)ର ଯୁଗ୍ମ ସଂପାଦକ ହେଲେ । ଆଚାର୍ଯ୍ୟ ହରିହର ଦାସ ମଧ୍ୟ ବାରମ୍ବାର ଗିରଫ ହୋଇ ଜେଲଦଣ୍ଡ ଭୋଗି ଖଲାସ ହେଉ ଥାନ୍ତି । ଉଭୟ ମିଶି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇଥିବା ପୁରୁଷ ଓ ମହିଳା ସତ୍ୟାଗ୍ରହୀଙ୍କ ଗୁଣ ବିକାଶ ପ୍ରତି ବିଶେଷ ଦୃଷ୍ଟି ଦେଲେ । ସ୍ୱରାଜ୍ୟ ଆଶ୍ରମରେ ରହି ତରୁଣ ସତ୍ୟାଗ୍ରହୀଙ୍କୁ ଏକତ୍ର କରି ଗୀତା ଓ ଅନ୍ୟାନ୍ୟ ସଦ୍‌ଗ୍ରନ୍ଥ ପଢ଼ାଇବା, ମହିଳା ସତ୍ୟାଗ୍ରହୀଙ୍କ ବକ୍ତୃତା ଶକ୍ତି ବଢ଼ାଇବା ପାଇଁ ବାଦାନୁବାଦ ସଭା କରାଇବା, ରାଷ୍ଟ୍ରଭାଷା ଶିକ୍ଷାର ବ୍ୟବସ୍ଥା ଆଦି ପ୍ରତି ସେମାନେ ଦୃଷ୍ଟି ଦେଲେ । ଏହି ସମୟରେ (୧୯୩୨-୩୩) ଗାନ୍ଧୀ ସେବା ସଂଘରୁ ଗୋପବାବୁଙ୍କୁ ମାସିକ ଟ ୧୦୦/- ଆର୍ଥିକ ସାହାଯ୍ୟ ମିଳୁଥିଲା । ଏହି ଅର୍ଥ ସେ ହରିଜନ ସେବା-କାମରେ ଲାଗିଥିବା ମହିଳା କର୍ମୀଙ୍କ ଭରଣ ପୋଷଣରେ ଖରଚ କରୁଥିଲେ । ଗାଂଧୀ ସେବା ସଂଘର କର୍ତ୍ତୃପକ୍ଷ ତାଙ୍କୁ ଲେଖିଲେ ଯେ ଏହି ଅର୍ଥ କେବଳ ତାଙ୍କରର ପରିବାରର ଭରଣ ପୋଷଣ ପାଇଁ ଖରଚ ହେବା କଥା । ଗୋପବାବୁ ଲେଖିଲେ ଯେ ମୋ ସାଂଗରେ ଏକା ଧ୍ୟେୟ ରଖି କାମ କରୁଥିବା ଏହି ଝିଅମାନଙ୍କୁ ମୁଁ ମୋର ପରିବାର ମଣୁଛି । ତାଙ୍କ ପାଇଁ ଯଦି ଏହା ମୁଁ ଖରଚ କରି ନ ପାରିବି, ମୋର ସେ ଅର୍ଥ ଲୋଡ଼ା ନାହିଁ । ଗାଂଧୀ ସେବା ସଂଘ ଅବଶେଷରେ ଅର୍ଥ ସାହାଯ୍ୟ ଚାଲୁ ରଖିବାକୁ ନିଷ୍ପତ୍ତି କଲେ ।

୧୯୩୪ ରେ ଗାନ୍ଧୀଜୀଙ୍କର ଐତିହାସିକ ହରିଜନ ପଦଯାତ୍ରାରେ ଗୋପବାବୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରହି ପଦଯାତ୍ରାର ବ୍ୟବସ୍ଥା କରୁଥିଲେ ।



ପଦଯାତ୍ରା ସଂଚାଳନ

ପଦଯାତ୍ରା ବିଷୟରେ ଗୋପବାବୁ ଗାନ୍ଧୀଜୀଙ୍କୁ କୌଣସି କଥା ପୂଚେଇଲେ ଗାନ୍ଧୀଜୀ ବରାବର ହସି ହସି କହୁଥିଲେ " ମୈଜେଷ୍ଟ୍ରେଟକୋ ହୁକମ୍ ତୋ ମାନନା ହୀ ପଡେଗା " । ପଦଯାତ୍ରା ଶେଷ ହେବା ବେଳକୁ ଗାନ୍ଧୀଜୀ କଂଗ୍ରେସ କର୍ମୀମାନଙ୍କୁ ଗାଁ ଗଣ୍ଡାରେ ରହି କାମ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଗାଁରେ ରହି କଣ କରିବୁ ବୋଲି କେହି ଜଣେ କର୍ମୀ ଗାନ୍ଧୀଜୀଙ୍କୁ ପଚାରିଲାରୁ ଗାନ୍ଧୀଜୀ କହିଲେ " ଗୋଟିଏ ଗର୍ଭିଣୀ ସିଂହୀ ମେଣ୍ଢାପଲ ଉପରେ କୁଦା ମାରି ମେଣ୍ଢା ଶିକାର କଲାବେଳେ ସେହି ମେଣ୍ଢାପଲ ଭିତରେ ଗୋଟିଏ ଛୁଆ ପ୍ରସବ କରି ପକାଇଲା । ସେହି ସିଂହ ଛୁଆଟି ମେଣ୍ଢାପଲରେ ବଢ଼ିଲା । ମେଣ୍ଢାଙ୍କ ପରି ଘାସ ଖାଏ, ମେଣ୍ଢାଙ୍କ ପରି ଭେଁ ଭେଁ ହୁଏ ଓ ବାଘ ସିଂହ ଦେଖିଲେ ମେଣ୍ଢାଙ୍କ ପରି ଡରି ପଳାଏ । ଦିନେ ଗୋଟିଏ ସିଂହ ସେହି ମେଣ୍ଢାପଲକୁ ଆକ୍ରମଣ କଲାରୁ ମେଣ୍ଢା ଦଉଡ଼ି ପଳାଇବାକୁ ଲାଗିଲେ । ସିଂହ ଛୁଆ ମଧ୍ୟ ତାଙ୍କ ସାଂଗରେ ଦଉଡ଼ି ପଳାଇଲା । ସିଂହ ଛୁଆର ଏ ବେଭାର ଦେଖି ସିଂହଟି ବିସ୍ମିତ ହେଲା । ସେ ସିଂହଛୁଆର କାନକୁ କାମୁଡ଼ି ଧରି ତାକୁ ଗୋଟିଏ ଝରଣା ପାଖକୁ ନେଇ ପ୍ରତିବିମ୍ବ ଦେଖାଇ କହିଲା- ଦେଖ୍ ତୁ ଓ ମୁଁ ହେଉଛୁ ଏକା ଜାତୀୟ ଜୀବ । ତୁ ମୋତେ ଡରୁଛୁ କାହିଁକି? ସିଂହଛୁଆ ପ୍ରତିବିମ୍ବ ଦେଖି ବୁଝିଲା ଯେ ସେ ସିଂହ । ସେ ମେଣ୍ଢାପଲକୁ ଫେରି ନ ଯାଇ ସିଂହ ସାଂଗରେ ରହିଲା । ତୁମେମାନେ ସେହିପରି ଗାଁରେ ରହି ସିଂହପରି ନିର୍ଭୟରେ ବିଚରିବ ଏବଂ ଗାଁ ଲୋକମଧ୍ୟରେ ଯେଉଁ ସିଂହ ଶୋଇ ରହିଛି ସେହି ସୁପ୍ତ ସିଂହକୁ ଜାଗ୍ରତ କରି ତାର ଶକ୍ତିକୁ ହେଜେଇ ଦେବା ତୁମର କାମ ହେବ ।"

ଗାନ୍ଧୀଜୀଙ୍କ ନିର୍ଦ୍ଦେଶାନୁସାରେ



ସୁରେନ୍ଦ୍ର ନାଥ ପଟ୍ଟନାୟକ

ଗୋପବାବୁ ଗାଁରେ କାମ କରିବାକୁ ମନସ୍ଥିର କଲେ । ଅନଗୁଳ, ବରୀ, ପଟିଆ ଏ ତିନୋଟି ସ୍ଥାନ ପ୍ରଥମେ ବାଛି ପରେ ତାଙ୍କର ଅତୀତର ସେବାକ୍ଷେତ୍ର ବନ୍ୟାପ୍ରପୀଡ଼ିତ ଦୁର୍ଗମ ପଥ ସଙ୍କୁଳ ବରୀ ଅଂଚଳରେ ରହି ଗଠନମୂଳକ କାମ କରିବାକୁ ସ୍ଥିର କଲେ । ତାଙ୍କ ସଂଗେ ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ; ରମାଦେବୀ, ଗୋଦାବରୀ, ସୁଶୀଳା, ଶୋଭା, ମଂଗଳା, ତୁଳସୀ, ଅନ୍ନପୂର୍ଣ୍ଣା ଆଦି ନାରୀ କର୍ମୀମାନେ ମଧ୍ୟ (ଅଗଷ୍ଟ ୧୩, ୧୯୩୪) ରେ ବରୀ ଗଲେ । ଶ୍ରୀ ବିନୋଦ କାନୁନଗୋ କିଛିଦିନ ପରେ ଆସି ଏହି ପରଖରେ ଯୋଗ ଦେଲେ ।



ଗୋଦାବରୀ ଦେବୀ



ମଙ୍ଗଳା ଦେବୀ, ଲେଖିକା, ଗାଂଧୀଜୀ, ସୁଶୀଳା ଦେବୀ ଓ ଅନ୍ୟମାନେ

ବାଗ୍‌ଦା ଗ୍ରାମର **ବାମନ ଚରଣ ଦାସଙ୍କ**

ଚଉପାଢ଼ୀରେ ୧୯୩୪ର ପଦଯାତ୍ରା ସମୟରେ ଗାନ୍ଧୀଜୀ ଗୋଟିଏ ଦିନ କଟାଇ ଥିଲେ । ବାମନ ବାବୁ ଗୋପବାବୁ ଓ ତାଙ୍କ ସହକର୍ମୀଙ୍କ ରହିବା ପାଇଁ ସେହି ଚଉପାଢ଼ୀ ଛାଡ଼ି ଦେଲେ । ପରେ ସେ ଖଣ୍ଡିଏ ଜମି ମଧ୍ୟ ଆଶ୍ରମ କରିବା ପାଇଁ ଦାନ କଲେ । ଆଚାର୍ଯ୍ୟ ହରିହର ଦାସ ସୁନିଆଁ ଦିନ ସେଠାରେ ମାଟି ପକାଇ ଶୁଭ ଦେଲେ । ବରୀରେ ସ୍ୱରାଜ୍ୟ-ସାଧନା ଆରମ୍ଭ ହେଲା ।ସୂତାକଟା, ତୁଳାଭିଣା, ରୋଷେଇ, ସଫେଇ ଆଦି ନିଜ କାମ ନିଜ ହାତରେ କରିବା ସଂଗେ ସଂଗେ ଡିହ ବାନ୍ଧିବା ପାଇଁ ମୂଲିଆଙ୍କ ସଂଗେ ମାଟି ବୋହିବା କାମ ମଧ୍ୟ ଗୋପବାବୁ ଓ ତାଙ୍କର ସହକର୍ମୀମାନେ କଲେ । ବାଗ୍‌ଦା ହରିଜନ ବସ୍ତିରେ ସାଂଧ୍ୟପ୍ରାର୍ଥନା ଓ ଗାଁ ରୋଗୀଙ୍କୁ ଔଷଧ ଦେବା ହେଲା ଗ୍ରାମ-ସେବା ବା ଗ୍ରାମ ସଂଗଠନର



ଶୋଭା ଦେବୀ



ବାମନ ବାବୁ




ଠକ୍କର ବାପା, ଗାଂଧୀଜୀ, କୁଡ଼ିଆବାସୀ ହରିଜନ;
ଜଣେ କର୍ମୀ, ବିନୋଦ୍ କାନୁନଗୋ)

ପ୍ରଥମ ସୋପାନ ।ତାହାପରେ ସୂତାକଟା ଆରମ୍ଭ କରାଗଲା । ଗରିବଙ୍କ ପାଇଁ ଶସ୍ତାରେ ବାଉଁଶ ଅରଟ ତିଆରୀ କରି ସେଥିରେ ୟେରବାଡ଼ା ଚକ୍ରରେ କଟା ଯାଉଥିବା ଗତିରେ ସୂତା କଟାଯାଇ ପାରୁଛି ଖବର ପାଇ ଗାନ୍ଧୀଜୀ ଲେଖିଲେ

" ८ सितम्बर १९३४: बांस के चर्खेसे जो सूत निकले उसक ख्याल भी मुझे देना । उस्के चकके घेराव कितने है? २१ दिसम्बर १९३४: देहातिओंका सूत का अंक, समानता, मजबुती निकालो । शिघ्र बुन्वा लो । देहातिओं के दूसरे धन्देके ख्याल रखो ।

चवल कैसे खाते हैं? आंगणमें थोडा कपास और भाजीके बीज डालो । यथा संभव सब मजदूरी हाथसे करना ही अच्छा है । बापु के आशीर्वाद " ଏହାର ପରବର୍ତ୍ତୀ ସୋପାନ ହେଲା ପ୍ରୌଢ଼ଶିକ୍ଷା । ହରିଜନ ବସ୍ତି ମାନଙ୍କରେ ସକାଳେ ଛୋଟ ପିଲାଙ୍କୁ ଓ ରାତିରେ ମୂଲ ଲାଗୁଥିବା କିଶୋର ଓ ଯୁବକମାନଙ୍କୁ ଅକ୍ଷର ଶିକ୍ଷା ଓ ସଧାରଣ ଜ୍ଞାନ ଦେବା କାମ ଆରମ୍ଭ ହେଲା । ରଂପା ଓ ପଗିରା ଅଣହରିଜନ ସାହିରେ ମଧ୍ୟ ଦୁଇଟି ମହିଳା କ୍ଲବ୍ ଆରମ୍ଭ କରା ଯାଇ ସୂତାକଟା, ପୁରାଣ ପାଠ, ଅକ୍ଷର ଶିକ୍ଷା, ସାଧାରଣ ଜ୍ଞାନ ଦେବା ଆଦି ଚାଲିଲା । ସ୍ତ୍ରୀଲୋକଙ୍କ ଶିକ୍ଷା ବିଷୟରେ ଗାନ୍ଧୀଜୀ ଲେଖିଲେ:- ग्राम की प्रवृत्ति के बारेमें जो योजना भेजी है वह अच्छि है । इसका अमल किया जाय जो अच्छा होगा । लड्की, मा और बडी वहनोंके लिए इतना ही कह दुँ । प्रथम तालीम शारिरीक ज्ञानकी, बादमें शारिरीक श्रम की, पीछे गृह उद्द्योगकी, पीछे हिन्दी अक्षर ज्ञान की और मातृभाषा आवश्यक नहिं है । बापु के अशीर्वाद

ପ୍ରୌଢ଼ଶିକ୍ଷା କାମ ବ୍ୟବସ୍ଥିତ ହେବା ପରେ ଗ୍ରାମ ସଫାଇ ଓ ଗ୍ରାମ ସଡ଼କ ତିଆରୀ କାମ ଆରମ୍ଭ କରାଗଲା । ମହାତ୍ମା ଗାନ୍ଧୀ ଲେଖିଲେ:- देहात के रस्ते पक्के बनानेकी कोशिश कि जाय । देहाती उसमें मदद देवे तो बहुत कम खर्चसे ग्राम सुधार हो सकता है । XXX बापु के अशीर्वाद

ଏହିପରି ଭାବରେ ଗାନ୍ଧୀଜୀଙ୍କ ଆଶୀର୍ବାଦ ଘେନି ଗୋଟିଏ ପରେ ଗୋଟିଏ ଗ୍ରାମ ସଂଗଠନ କାମ ଆରମ୍ଭ ହେଲା ଓ ସ୍ଥାନୀୟ ଲୋକେ ମଧ୍ୟ ସାହାଯ୍ୟ ସହଯୋଗ କରିବାକୁ ଲାଗିଲେ ।

ବାମନବାବୁ ଦେଇଥିବା ଜମିରେ ଡିହ ବନ୍ଧା ହେବାପରେ ଆମ ଘର ତିଆରୀ କାମ ଆରମ୍ଭ ହେଲା । ବାଉଁଶ ପେଲା, ବାଉଁଶ ଶେଣି ଓ ରୁଅ, ବାଉଁଶ କବାଟ ଓ ଝାଟିମାଟି କାନ୍ଥର ଘର । ଗୋଟିଏ ଲୁହା କଣ୍ଟା ସୁଦ୍ଧା ସେ ଘରେ ରହିଲା ନାହିଁ । ଗାଁର କେତେକ ଉତ୍ସାହୀ ଲୋକ ଗୋପବାବୁଙ୍କୁ ସୂଚେଇଲେ - ଦୁଇଟି କାଠ ଖୁଣ୍ଟ ଘର ମୁଣ୍ଡରେ ଦେଇ ଦେଲେ ଘର ମଜବୂତ ହେବ । ଗୋପବାବୁ ବାଗ୍‌ଦା ହରିଜନ ବସ୍ତି ଆଡ଼କୁ ଚାହିଁ କହିଲେ - <u>ଯାହାଙ୍କ ସେବା କରିବାକୁ ଆସିଛୁ, ତାଙ୍କ ଘରଠାରୁ ଭଲ ଘରେ ରହିବା ଆମ ପକ୍ଷରେ ଶୋଭାପ୍ରଦ ନୁହେଁ</u> । ସେହି ବାଉଁଶ ପେଲା ଦିଆ ଘରର ନାଆଁ କଣ ଦିଆଗଲା ବୋଲି ଗାନ୍ଧୀଜୀ ପଚାରି ଲେଖିଲେ । ଗାନ୍ଧୀଜୀଙ୍କୁ ଲେଖା ହେଲା ଗୋଟିଏ ପରିବାର ଭଳି ରହି ନିଜେ ଶ୍ରମକରି ଗାଁର କିଛି ସେବା କରିବା ଉଦ୍ଦେଶ୍ୟରେ ଆମେ ଏକାଠି ଅଛୁ । ଗାନ୍ଧୀଜୀ ସେହି ବାଉଁଶ ପେଲା ଦିଆ ଘରର ନାମ କରଣ କଲେ "ସେବା ଘର"



ସେବାଘର

। ଡିହରେ କୂଅ ନ ଥାଏ । ବାଗ୍‌ଦା ହରିଜନ ବସ୍ତି କୂଅରୁ ମାଠିଆରେ ପାଣି ବୋହି ଆଣି, କନ୍ତକାରରେ ଗାଧୁଆ ପାଧୁଆ କରି ସେବାଘର ଜୀବନ ସୁରୁଖୁରୁରେ ଆରମ୍ଭ ହେଲା ।

ଏହା ପରେ ଗୋପବାବୁ ବରୀ ଅଂଚଳରେ ରାଜନୈତିକ ଚେତନା ବଢ଼ାଇବା ଉଦ୍ଦେଶ୍ୟରେ ଗ୍ରାମେ ଗ୍ରାମେ ପ୍ରାଥମିକ କଂଗ୍ରେସ କମିଟି ଗଠନ କାମ ଆରମ୍ଭ କରିବା ପାଇଁ ଏକ ଛାପା ନିବେଦନ ପ୍ରସ୍ତୁତ କଲେ ।

" ବନ୍ଧୁ, ଆପଣ କଂଗ୍ରେସର ଜଣେ ସଭ୍ୟ ହୋଇଛନ୍ତି । ଖଣ୍ଡିଏ କାଗଜରେ ଦସ୍ତଖତ୍ କରି ଚାରିଅଣା ଚାନ୍ଦା ଦେଇଛନ୍ତି । ଲୋକେ ତ ଟଙ୍କା କଉଡ଼ି ଧାର ଦେଲା ବେଳେ ଦଲିଲ ଦସ୍ତାବିଜରେ ଦସ୍ତଖତ୍ କରିଥାନ୍ତି । ଏଠି ବି ଦଲିଲରେ ଦସ୍ତଖତ୍ କରିଛନ୍ତି ? ଓଲଟା ପୁଣି ହାତରୁ ଚାରିଅଣା ପଇସା ଦେଇଛନ୍ତି । ଦଲିଲ ରେଜେଷ୍ଟ୍ରୀ ଫିସ୍ ଦେଲା ଭଳି ଏ କଂଗ୍ରେସ ଚାନ୍ଦା ଦେଇଛନ୍ତି । କଥାଟି

ହେଉଛି ଆପଣ ଗୋଟିଏ ପ୍ରକାରର ଚୁକ୍ତିପତ୍ରରେ ଦସ୍ତଖତ୍ କରିଛନ୍ତି । ଆପଣ ଗୋଟିଏ ସଙ୍କଳ୍ପ କରି ଏ ଦସ୍ତଖତ୍ କରିଛନ୍ତି । ଏ ସଙ୍କଳ୍ପ କଣ ପାଇଁ କରିଛନ୍ତି? ଆପଣ ଏ ଚୁକ୍ତି ଆପଣା ଦେଶ ସାଂଗରେ କରିଛନ୍ତି । ଏ ସଙ୍କଳ୍ପ ଆପଣ ଦେଶର ମଂଗଳ ପାଇଁ କରିଛନ୍ତି । ଦେଶ ଓ ଦଶଙ୍କର ମଂଗଳ ପାଇଁ ଦେଶରେ ସ୍ୱରାଜ୍ୟ ଲୋଡ଼ା । ସେହି ସ୍ୱରାଜ୍ୟ ପାଇଁ ଆପଣ ଦସ୍ତଖତ୍ କରି ଦେଇଛନ୍ତି । ସେଥିପାଇଁ ଆପଣ କିଛି ନା କିଛି କରିବେ ବୋଲି ଚୁକ୍ତି କରିଛନ୍ତି । ମନରେ ସଙ୍କଳ୍ପ କରିଛନ୍ତି ଆପଣଙ୍କ ବଳକୁ ଅନେଇ ଆପଣ ଯଥାଶକ୍ତି ସ୍ୱରାଜ୍ୟ ପାଇଁ ଚେଷ୍ଟା କରିବେ । ଏଥିରେ ନଗଦ ଲାଭ ନାହିଁ । ଏଥିରେ ଯେ ଲାଭ ତାହ ଭବିଷ୍ୟତକୁ ମିଳିବ । ସେ ଲାଭ ଆମର ପରମ ଇଷ୍ଟ ଲାଭ । ସେ କେବେ ମିଳିବ, ତାହା ସମସ୍ତଙ୍କର ଚେଷ୍ଟା ଉପରେ ନିର୍ଭର କରେ । ଚେଷ୍ଟା କଲେ ତ ଦିନକରେ ମିଳିପାରେ ।

ଏ ଚୁକ୍ତିରେ, ଏ ସଙ୍କଳ୍ପରେ ଗୋଟିଏ ବିଶେଷ କଥା ଅଛି । ଯେମିତି ପାରେ ସେମିତି ସ୍ୱରାଜ୍ୟ ହେବ ନାହିଁ । କଂଗ୍ରେସର ଉଦ୍ଦେଶ୍ୟ ଫାରମରେ ଲେଖା ଅଛି " ଶାନ୍ତିପୂର୍ଣ୍ଣ ନ୍ୟାୟସଂଗତ ଉପାୟରେ ସ୍ୱରାଜ୍ୟ ପ୍ରାପ୍ତି" - ନ୍ୟାୟରେ ଚଳିବାକୁ ହେବ, ଶାନ୍ତି ରଖି ଚଳିବାକୁ ହେବ - ତେବେ ଯାଇ ସ୍ୱରାଜ୍ୟ ପାଇବା । ସତ୍ୟ ଛଡ଼ା ନ୍ୟାୟ ନାହିଁ । ସେଥିପାଇଁ କଂଗ୍ରେସର ମୂଳମନ୍ତ୍ର ହେଉଛି " ସତ୍ୟ ଓ ଅହିଂସା" । ସେହି ସତ୍ୟ ଓ ଅହିଂସା ବାଟ ଧରି ଆପଣଙ୍କୁ ଚୁକ୍ତି ରକ୍ଷା କରିବାକୁ ହେବ ।

ଏ ବ୍ରତର ସାଧନ ପାଇଁ ତପସ୍ୟା ଦରକାର । ଖାଲି ମୁନି ଋଷି ବଣରେ ବସି ତପସ୍ୟା କରନ୍ତି ନାହିଁ । ପ୍ରତ୍ୟେକ ମନୁଷ୍ୟ ଆପଣା ଉଦ୍ଦେଶ୍ୟ ସାଧନରେ, ନିଜର ସଙ୍କଳ୍ପ ସିଦ୍ଧି ପାଇଁ ଯେ କଷ୍ଟ ସ୍ୱୀକାର କରେ ତାକୁ ହିଁ ତପଶ୍ଚର୍ଯ୍ୟା କହନ୍ତି । ଏ ତପଶ୍ଚର୍ଯ୍ୟାରେ "ସତ୍ୟ ଓ ଅହିଂସା" ମୂଳମନ୍ତ୍ର । ସେଥିଯୋଗୁ ମନ ଶୁଦ୍ଧ ହେବା ଆବଶ୍ୟକ । କଷ୍ଟସ୍ୱୀକାର ଅର୍ଥ ସ୍ୱାର୍ଥ ତ୍ୟାଗ । ସେଥିପାଇଁ ଆପଣଙ୍କୁ ସ୍ୱରାଜ୍ୟ ପାଇଁ କିଛି ସ୍ୱାର୍ଥ ତ୍ୟାଗ କରିବାକୁ ହେବ । ସବୁବେଳେ ଆପଣାର ସ୍ୱାର୍ଥ ଚିନ୍ତା କରି କରି ମଣିଷର ମନ ବିଷୟ ମଳିନ ହୋଇଯାଏ । ବେଳେ ବେଳେ ସ୍ୱାର୍ଥ ଚିନ୍ତା ଛାଡ଼ି ଦେଶ ଚିନ୍ତା ଆବଶ୍ୟକ ।

ଏ ତପଶ୍ଚର୍ଯ୍ୟାରେ ଆପଣ ଏକା ନୁହନ୍ତି । ଆପଣଙ୍କ ସଂଗେ ଆଉ ଅନେକ କଂଗ୍ରେସ ସଭ୍ୟ ହୋଇଛନ୍ତି । ସେଥି ପାଇଁ ଏ କାମରେ ସାଧନା ପାଇଁ ସଂଘ ଲୋଡ଼ା । ସଂଘବଦ୍ଧ ହୋଇ କାମ କଲେ ଫଳ ଶୀଘ୍ର ମିଳେ । ଆଜି କଂଗ୍ରେସ ଏଥିପାଇଁ ମହାସଂଘ । ଆପଣମାନଙ୍କୁ ପ୍ରାଇମେରୀ କମିଟିରେ ସଂଘବଦ୍ଧ ହେବାକୁ ପଡ଼ିବ । ପ୍ରାଇମେରୀ କମିଟି ଜରିଆରେ ଦେଶ ପାଇଁ ଦଶଙ୍କ ପାଇଁ କିଛି କରିବାକୁ ହେବ ।

ଆପଣ କମିଟିରେ ବସି ଗାଁର ଭଲମନ୍ଦ ଯେଉଁଥିରେ ହେଉଛି ବା ହେବ ସେ କଥା ଆଲୋଚନା କରନ୍ତୁ । (୧) ନିଜେ ଗାଁର ସ୍ୱାସ୍ଥ୍ୟ ରକ୍ଷା ପାଇଁ ସାହି ପଡ଼ିଶାଙ୍କ ଭଲ ପାଇଁ ଆପଣା ଗାଁ ପରିଷ୍କାର ରଖନ୍ତୁ । ଆପଣ କୁଅଭ୍ୟାସମାନ ଛାଡ଼ି ଗାଁ ଆଖ ପାଖ ମଇଳା କରନ୍ତୁ ନାହିଁ । (୨) ଗାଁର ପଇସା ଗାଁରେ ରଖନ୍ତୁ ବିଦେଶୀ ଜିନିଷର ଚକମକରେ ଭୁଲନ୍ତୁ ନାହିଁ । ଟିକିଏ କଷ୍ଟ ସ୍ୱୀକାର କରି ଆପଣା ଦେଶର ମୋଟାରୋଟାରେ ସନ୍ତୁଷ୍ଟ ହୁଅନ୍ତୁ । ଗାଁରେ ସ୍ୱଦେଶୀ ଚିଜ କିପରି ତିଆରୀ ହେବ ତାର ଯତ୍ନ କରନ୍ତୁ । (୩) ବାହା ଶ୍ରାଦ୍ଧ ପୂଣ୍ୟ ପର୍ବରେ ବାଜେ ଖର୍ଚ୍ଚ କରି ଋଣଗ୍ରସ୍ତ ହୁଅନ୍ତୁ ନାହିଁ । ବୃଥା ଆଡ଼ମ୍ବରରେ ଲାଭ ନାହିଁ । (୪) ଆପଣା ପଇସା ପରକୁ ଦିଅନ୍ତୁ ନାହିଁ । ଗାଁର ଇଜ୍ଜତ ପଦାରେ ପକାନ୍ତୁ ନାହିଁ । ଗାଁ କଳି ଗାଁରେ ତୁଟାନ୍ତୁ । ତେବେ ଆମର ଯେ ସତ୍ୟ ଓ ଅହିଂସା ଆଶ୍ରୟ ଏ କଥା ଭୁଲିବା ନାହିଁ । ପଂଚାୟତ ନିରପେକ୍ଷ ହେବା ଆବଶ୍ୟକ । ପଂଚାୟତି ନିଷ୍ପତ୍ତିରେ ଜୋରଜୁଲୁମ ରଖିବେ ନାହିଁ - ଜୋରିମାନା ବାସନ୍ଦ ଏସବୁ କରିବାର ନୁହେଁ । (୫) ଅନ୍ୟାୟ ଜୁଲୁମକୁ ଡ଼ରିବେ ନାହିଁ । ଆପଣ ଡରିଲେ ଆପଣଙ୍କ ଦେଖା ଦେଖି ଅନ୍ୟ ସାହି ପଡ଼ିଶା ଡରିବେ । ଯେ ଡରାଉଛି ସେ ବେଶୀ ଡ଼ରାଇବ । ଦେଶର, ଦଶଙ୍କର କ୍ଷତି ବେଶୀ ହେବ । ସେଥିପାଇଁ ମନରୁ ଭୟ ଦୂର କରି ସତ୍ୟ ଅହିଂସା ପଥରେ ରହି ଅସତ୍ୟ ଅନ୍ୟାୟର ବିରୋଧ କରନ୍ତୁ । (୬) ଅଳସୁଆ ହୋଇ ବସନ୍ତୁ ନାହିଁ । ଅଳସୁଆ ହେଲେ ଦେଶରେ ହିଂସା ବଢ଼େ । ଯେ ନିଜେ ପରିଶ୍ରମ ନ କରି ଉତ୍ପନ୍ନ ନ କରି ଖାଏ, ଅନ୍ୟର ପରିଶ୍ରମର ଉତ୍ପନ୍ନ ଖାଇ ଚଳେ ସେ ହିଂସା କରେ । ସେଥିରେ ଅସମାନତା ବଢ଼େ, ଅଶାନ୍ତି ବଢ଼େ । (୭) ନିଶା ଦ୍ରବ୍ୟ ବ୍ୟବହାର କରନ୍ତୁ ନାହିଁ - ସେଥିରେ ବୁଦ୍ଧି ମଳିନ ହୁଏ, ଧନ ସଂପତ୍ତି ଉଡ଼ି ଯାଏ, ସର୍ବନାଶ ହୁଏ । ଗାଁରୁ ନିଶା ଖିଆ ବନ୍ଦ କରାନ୍ତୁ । (୮) ନରଦେହେ ନାରାୟଣ ଅଛନ୍ତି । ମନୁଷ୍ୟକୁ ଅଛୁଆଁ କରି ନାରାୟଣଙ୍କର ଅବମାନନା କରନ୍ତୁ ନାହିଁ । ହିନ୍ଦୁ ଧର୍ମର ରକ୍ଷା ପାଇଁ ଅସ୍ପୃଶ୍ୟତା ଭୂତକୁ ତଡ଼ନ୍ତୁ । ଦେଶ ଭାଇଙ୍କୁ ଆଜି ଅସ୍ପୃଶ୍ୟ କରିଥାଇଁ ବୋଲି ଆମ କଳା ଲୋକେ ଆଜି ଦେଶ ବିଦେଶରେ ଅନ୍ୟଙ୍କ ପାଖରେ ଅସ୍ପୃଶ୍ୟ । ନିଜେ ଅନ୍ୟାୟ ଜୁଲୁମ ବନ୍ଦ ନ କଲେ ଆମ ଉପରେ ଅନ୍ୟାୟ ଜୁଲୁମ ବନ୍ଦ ହେବ ନାହିଁ ।        ଆପଣଙ୍କ

ଗୋପବଂଧୁ ଚୌଧୁରୀ

ବରୀକଟକ        ୧୧ | ୧୦ | ୩୮

[ ବି.ଦ୍ର,:- ପ୍ରାଥମିକ କଂଗ୍ରେସ କମିଟି ଗଢ଼ିବାକୁ ହେଲେ ଗୋଟିଏ ଗାଁରେ ବା ଗୋଟିଏ ୟୁନିଅନର କେତୋଟି ଗାଁର ମିଶି ପଚାଶ ଜଣରୁ ବେଶୀ ସଭ୍ୟ ଥିବେ ଏବଂ ସେମାନଙ୍କର କାମ ଚଳାଇବାକୁ ସବୁବେଳେ ଖଦଡ଼ ପିନ୍ଧୁଥିବା ଦୁଇ ଜଣ କାର୍ଯ୍ୟକର୍ତ୍ତା ଥିବେ । ସଭ୍ୟ ହେବାର ତିନି ମାସ ପରେ ଜିଲ୍ଲା କଂଗ୍ରେସ କମିଟି ସବୁ ତଦାରଖ କରି ପ୍ରାଥମିକ କମିଟିକୁ ମଂଜୁରି ଦେଲେ ଚାନ୍ଦା ପଇସାରୁ ତାଙ୍କ ଅଂଶ ତାଙ୍କୁ ମିଳିବ ।]"

ଗ୍ରାମେ ଗ୍ରାମେ ପ୍ରାଥମିକ କଂଗ୍ରେସ କମିଟି ଗଠନ କରିବାକୁ ସ୍ଥାନୀୟ ଲୋକେ ବାହାରିଲେ । ଅରଂଗାବାଦରେ **ଗୋବର୍ଦ୍ଧନ ପୁହାଣ**, ଆନ୍ଦପୁରରେ **ଭଗୀରଥ ଦାସ** ଓ **ପ୍ରିୟଂବଦା ଦେବୀ**, ରଂପାରେ **ଗଣେଶ ମହାନ୍ତି**, ଧାରପୁରରେ **ବୀରବର ରଥ**, ରାମପୁର ଅଂଚଳରେ **ଗୋବିନ୍ଦ ସାମଲ**, ଅମଟପୁର ଅଂଚଳରେ **ରଂଗାଧର ଦାସ**, ବାଲିବିଲ ଅଂଚଳରେ **ସୁରେନ୍ଦ୍ର ପତି** ଆଦି ବହୁ ସ୍ଥାନୀୟ କର୍ମୀ ବାହାରିଲେ ।



ବାଁକୁ ଭଗୀରଥ



ପ୍ରିୟଂବଦା ଦେବୀ



ଗଣେଶ ମହାନ୍ତି



ବୀରବର ରଥ



ରଂଗାଧର ଦାସ



ବିଶ୍ୱନାଥ ଆଜ୍ଞା

ସେମାନଙ୍କୁ ତାଲିମ ଦେବାର ପଛାରେ ଗୋପବାବୁଙ୍କର ବୈଶିଷ୍ଟ୍ୟ ଥିଲା । ଦିନେ ସେ ଗୋବିନ୍ଦ ସାମଲଙ୍କୁ କହିଲେ ତମ ଗାଁରେ କେତୋଟି "ପାନବଟୁଆ" ଅଛି ଗଣି ଆସି କହ । ଗୋବିନ୍ଦ ସାମଲ ହିସାବ ଆଣି ଦେବା ପରେ ସେ ଦିନ ସଂଧ୍ୟାରେ ସେ ଗାଁରେ ସଭା ହୋଇ ବଟୁଆ ପିଛା କେତେ ପଇସା ଗାଁରୁ ଯାଉଛି ସେ ସବୁ ଆଲୋଚନା ହେଲା ।

ସେହି ପରି ଗୋପବାବୁ ବିଂଝାରପୁର ଅଂଚଳର ଗୋଜାତିର ଉତ୍ଥାନ ପାଇଁ ନାନା ପ୍ରକାର ଗାଈ ଓ ଷଣ୍ଢ ବରୀରେ ରଖି ନିଜେ ପରଖ କରି ହରିଆନା ବିଂଝାରପୁର ମିଶ୍ର ଗୋଧନ ବଢ଼ାଇବା ପାଇଁ ନିଷ୍ପତ୍ତି କଲେ । ପାଂଚୋଟି କେଂଦ୍ରରେ ଧୃଷ୍ଟକେତୁ, ଚେକିତାନ, କାଶିରାଜ, ପୁରୁଜିତ୍, କୁନ୍ତିଭୋଜ ନାମରେ ପାଂଚୋଟି ଷଣ୍ଢ ରଖା ଗଲା । ପାଂଚ ବର୍ଷ ମଧ୍ୟରେ ସେ ଅଂଚଳରେ ଗାଈ ବଳଦଙ୍କ ଠାଣି ବଦଳି ଗଲା ।



ତଦାନୀନ୍ତନ ଭେଟେରନାରୀ ଡିରେକ୍ଟର **ଗୁରୁ ବଚନ ସିଂ** ସେ ଅଂଚଳର ଗାଈ ଗୋରୁ ଦେଖିବାକୁ ଇଚ୍ଛା ପ୍ରକାଶ କରି ଲେଖିବାରୁ ଗୋପବାବୁ ତାଙ୍କୁ ଆସିବା ପାଇଁ ନିର୍ଦ୍ଦିଷ୍ଟ ତାରିଖ ଦେଇ ଆମନ୍ତ୍ରଣ କଲେ । ଏଣେ ରଂପାର ଗଣେଶ ମହାନ୍ତିଙ୍କୁ ଦୁଇଟା ଟଙ୍କା ଦେଇ ମୁଢ଼ୀ ଉଖୁଡ଼ା କୀଣି ଆଣିବାକୁ ଓ ଅରୁଆଳ ଠାରୁ ରେଜାପୁର ପର୍ଯ୍ୟନ୍ତ ସବୁ ଗାଈଆଳଙ୍କୁ ଗୁହାଳୀ ପାଟରେ ବାଗୁଡ଼ି ଖେଳିବାକୁ ଆମନ୍ତ୍ରଣ ଦେଲେ । ଗାଈଆଳ ପିଲା ସବୁ ଗାଈ ଗୋରୁ ଅଡ଼େଇନେଇ ଗୁହାଳୀପାଟରେ ଚରାଇ ବାଗୁଡ଼ି ଖେଳିବା ବେଳେ ଗୁରୁ ବଚନ ସିଂହ ଯାଜପୁରରୁ ଗୁହାଳୀ ଆସି ବରୀ ଯିବାକୁ ପାଟରେ ପଶିଲେ ।



ପାଟରେ ବିରାଟ ପ୍ରାକୃତିକ ଗୋପ୍ରଦର୍ଶନୀ ଦେଖି ଗୁରୁବଚନ ସିଂ ଲସି ପିଇ ପରିତୁଷ୍ଟ ହୋଇ ଫେରିଲେ ।

ବରୀ ଅଂଚଳରେ ଧନିଆ, ସୋରିଷ ଆଦି ଫସଲ ବହୁତ ପରିମାଣରେ ହେଉ ଥିବାରୁ ମହୁଚାଷର

ସମ୍ଭାବନା ଦେଖି ଶ୍ରୀ **ନିତ୍ୟାନନ୍ଦ କାନୁନଗୋ** (ପରେ ରାଜ୍ୟପାଳ)ଙ୍କୁ କୋଏମ୍ବାଟୁର ଯାଇ ଜୟକରନ୍ଙ୍କ ପାଖରୁ ମହୁଚାଷ ଶିଖି ଆସିବାକୁ ଚୌଧୁରୀ ଦଂପତି ଅନୁରୋଧ କଲେ । ସେ ମହୁମାଛି ଧରିବା ବିଦ୍ୟା ଶିଖି ଆସି ହାତରେ ଦସ୍ତାନା ଗୋଡ଼ରେ ମୋଜା ମୁଣ୍ଡରେ ଜାଲି ଝାଲର ଲଗା ଟୋପି ପିନ୍ଧି ମହୁମାଛି ଧରିଲେ । ପରଦିନ ଗୋପବାବୁ ଖାଲି ଦେହରେ ମହୁମାଛି ପଲ ଧରି ଦେଲାରୁ ନିତ୍ୟାନନ୍ଦ ବାବୁ କହିଲେ " ଶିଷ୍ୟାତ୍ ଇଚ୍ଛେତ୍ ପରାଜୟ " ।



ଏହି ପରି ଭାବରେ ନିଶା ନିବାରଣ, ଅସ୍ପୃଶ୍ୟତା ନିବାରଣ, ଖଜୁରୀ ଗୁଡ଼ ତିଆରୀ ଆଦି ନାନା ପରକାର କାର୍ଯ୍ୟ ବରୀରେ ଚାଲିଲା । **ବ୍ରଜମୋହନ** ନିତ୍ୟାନନ୍ଦ କାନୁନଗୋ

ସିଂହଙ୍କ ପରିଚାଳନାରେ କର୍ମୀ ତାଲୀମ ଶିବିର ମଧ୍ୟ ଆରମ୍ଭ ହେଲା ।



ଶରତ୍ ବାବୁ, ଗୁଣନିଧି ମହାନ୍ତି, ଆଚାର୍ଯ୍ୟ ମହାଶୟ ଓ ଚାଟୁବାବୁ



ନୂଆ ନୂଆ କର୍ମୀ ବାହାରି କ୍ରମ ଓଡ଼ିଶାର ବିଭିନ୍ନ ଅଂଚଳରେ କର୍ମକେନ୍ଦ୍ର ସ୍ଥାପନ କଲେ । **ରାମଚନ୍ଦ୍ର ପୁରୀ** ଓ **ଅମୃତ ଦେବୀ** ସମଲାଇପଦର, **ପ୍ରଭାଦେବୀ** ବରଗାଁ, **ଶୋଭା ଦେବୀ** ସୁବର୍ଣ୍ଣପୁର, **ରାମମୋହନ ଦାସ** ଓ ମଂଗଳା ଦେବୀ ବ୍ରହ୍ମଗିରି, **ଗଂଗାନାରାୟଣ ଦାସ** ଝାଡ଼ପିପ୍ପଳ, **ପରମାନନ୍ଦ ପଟ୍ଟନାୟକ** ରଜପୁର, **ହରେକୃଷ୍ଣ ବିଶ୍ୱାଳ** ଓ **ବେଲ ଦେଈ** ଗଣେଶ୍ୱରପୁର, **ବିମଳା ଦେଈ** କାକଟପୁର, **କ୍ଷେତ୍ରମଣି ଦେଈ** ବାଗଲପୁର, **ବିଶ୍ୱନାଥ ପଟନାୟକ** କୁଜେନ୍ଦ୍ରୀ, **ମାୟାଧର ଖୁଣ୍ଟିଆ** କ୍ଷେଣ୍ଟତୀରା, **ଗୋକୁଳାନନ୍ଦ ମହାନ୍ତି** କୁମ୍ଭାରିଆ ଆଦି ଗାଁରେ କାମ କଲେ ।



ହରେକୃଷ୍ଣ ବିଶ୍ୱାଳ



ବିମଳା ଦେଈ



କ୍ଷେତ୍ରମଣି ଦେଈ

ଗୋପବାବୁଙ୍କ ପୁଅ ମନମୋହନ ଜେଲ୍ ରୁ ଖଲାସ ହେବା ପରେ ଶ୍ରୀ ସତୀଶ ଚନ୍ଦ୍ର ଦାସଗୁପ୍ତଙ୍କ ପାଖରେ ରହି ଚମଡ଼ା କଷ କାମ ଶିଖୁଥିଲେ । ସେ ସମୟରେ ଭାରତର ଚମଡ଼ା ବିଲାତକୁ ଶସ୍ତା ଦରରେ ରପ୍ତାନୀ ହୋଇ ମହଂଗା ଦରରେ ଜୋତା ବିଲାତରୁ ଆସୁଥିଲା । ଗାଁରେ ଚମଡ଼ା କଷ ପ୍ରବର୍ତ୍ତନ ଉଦ୍ଦେଶ୍ୟରେ ବରୀରେ Cottage Tannery ସ୍ଥାପିତ ହେଲା । ମନମୋହନ ବାବୁ ମଧୁକାର ସମବାୟ ସମିତି ମଧ୍ୟ ଗଠନ କଲେ ।



ପ୍ରାଦେଶିକ ସ୍ୱାୟତ୍ତ ଶାସନ ସ୍ଥାପିତ ହେବା ପରେ ନିର୍ବାଚନରେ କଂଗ୍ରେସ ବହୁ ସଂଖ୍ୟାରେ ବିଧାନ ସଭାରେ ସ୍ଥାନ ପାଇଲା । ଗୋପବାବୁ ଏହି ସମୟରେ ନିର୍ବାଚନ ପ୍ରଚାର କରି ନ ଥିଲେ କି ବିଧାନ ସଭା ପାଇଁ ପ୍ରାର୍ଥୀ ହୋଇ ନ ଥିଲେ । କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେବା ପରେ ଦେଶରେ ମୌଳିକ ଶିକ୍ଷାର ପ୍ରୟୋଗ ଆରମ୍ଭ ହେଲା । ଓଡ଼ିଶାରେ Board of Basic Education ଗଢ଼ା ହେଲା । ଗୋପବାବୁ ତାର ସଭାପତି ବଛା ହେଲେ । ବରୀ ନିକଟସ୍ଥ ରାମଚନ୍ଦ୍ରପୁରରେ ଏହି ଶିକ୍ଷାର ପ୍ରୟୋଗ ହିନ୍ଦୁସ୍ତାନୀ ତାଲୀମୀ ସଂଘର ତତ୍ତ୍ୱାବଧାନରେ ଆରମ୍ଭ ହେଲା । ବିଶ୍ୱ ଯୁଦ୍ଧ ଆରମ୍ଭ ହେବାରୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ । ସରକାର ମୌଳିକ ଶିକ୍ଷାର ପ୍ରୟୋଗ ବନ୍ଦ କରି ଦେଲେ । ଏହାର ପ୍ରତିବାଦ କରି **ରାମଚନ୍ଦ୍ର ମିଶ୍ର, ମଧୁସୂଦନ ମିଶ୍ର, କାହ୍ନୁ ଚରଣ ଜେନା, ଋଷି ବେହେରା,**



ରାମ ଗୁରୁଜୀ



ଋଷି ଗୁରୁଜୀ



କୃଷ୍ଣ ଗୁରୁଜୀ

**ଶ୍ୟାମ ସୁନ୍ଦର ପାଣିଗ୍ରାହୀ, ଗୋଲକ ଚନ୍ଦ୍ର ନାୟକ, ଗୋପୀନାଥ ଦାସ, ନାରାୟଣ ମିଶ୍ର, ସଦାଶିବ ରଥ, କୃଷ୍ଣ ଚରଣ ସାହୁ** ଆଦି ସରକାରୀ ଚାକିରୀରୁ ଇସ୍ତଫା ଦେଇ ବେସରକାରୀ ସୂତ୍ରରେ ପ୍ରୟୋଗ ଚଳାଇବାକୁ ଚାହିଁବାରୁ ଆଚାର୍ଯ୍ୟ ହରିହର ଦାସଙ୍କ ଅଧ୍ୟକ୍ଷତାରେ ଓ ଗୋପବନ୍ଧୁ ଚୌଧୁରୀଙ୍କ ସଂପାଦକତ୍ୱରେ ଉତ୍କଳ ମୌଳିକ ଶିକ୍ଷା ପରିଷଦ ଗଠନ କରାଗଲା । ଗାନ୍ଧୀଜୀ ଶିକ୍ଷକ ଓ ଗ୍ରାମବାସୀଙ୍କୁ ଅଭିନନ୍ଦନ ଜଣାଇଥିଲେ ଓ ସକ୍ରିୟ ସହଯୋଗ ମଧ୍ୟ ଦେଲେ । ଗୋପବାବୁ ମୌଳିକ ଶିକ୍ଷାକୁ ସଫଳ କରିବା ପାଇଁ ନାନାପ୍ରକାର ପରଖ ଚଳାଇଲେ ଏବଂ ଶିକ୍ଷକମାନଙ୍କ ସହିତ ମଧ୍ୟ ପରଖର ଆଦାନ ପ୍ରଦାନ ଚଳାଇଲେ । ପରବର୍ତ୍ତୀ କାଳରେ ଗୋପବାବୁ ହିନ୍ଦୁସ୍ତାନୀ ତାଲୀମୀ ସଂଘର ସଦସ୍ୟ ଥିବା ବେଳେ "ଗୁରୁଜୀକା ଚିଟ୍‌ଠା" ନାମକ ହିନ୍ଦୀ ମାସିକ ପତ୍ରିକାର ସଂପାଦନା କରିଥିଲେ ।

ସତ୍ୟାଗ୍ରହୀ ନାମକ ଏକ ସାପ୍ତାହିକ ପତ୍ର ଗୋପବାବୁଙ୍କ ସଂପାଦନାରେ ବାହାରୁଥିଲା । ସେଥିରେ କଂଗ୍ରେସୀ ମନ୍ତ୍ରିମଣ୍ଡଳର କାର୍ଯ୍ୟାବଳିର ଏକ ସୁସ୍ଥ ସମାଲୋଚନା ତିନୋଟି ପ୍ରବନ୍ଧରେ ପ୍ରକାଶ ପାଇଥିଲା । ସେହି ସମୟରେ ପୁନାରେ ବସିଥିବା ନିଖିଳ ଭାରତ କଂଗ୍ରେସ କମିଟିର ବୈଠକରେ ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ଶ୍ରୀ **ବିଶ୍ୱନାଥ ଦାସ** ଏହି ସମାଲୋଚନା ପାଇଁ ମନଦୁଃଖ

କରିଥିଲେ । ସରଦାର ପଟେଲ ସେତେବେଳେ କଂଗ୍ରେସ ପାର୍ଲାମେଣ୍ଟାରୀ ବୋର୍ଡ଼ର ସଦସ୍ୟ ଥିଲେ । କଂଗ୍ରେସୀମାନେ ତାଙ୍କୁ "କଂଗ୍ରେସ ହାଇ କମାଣ୍ଡ୍" କହୁଥିଲେ । ଏ ଘଟଣା ଶୁଣି ସରଦାର ପଟେଲଙ୍କ ମନରେ ସମ୍ଭବତଃ ଏହି ବିଚାର ଆସିଲା ଯେ ଗୋପବାବୁ ନିଜେ ମନ୍ତ୍ରୀପଦରେ ରହିବାକୁ ଇଚ୍ଛା କରୁଛନ୍ତି । ସେଥିପାଇଁ ଭଆର୍ଦ୍ଧାକୁ ଗୋପବାବୁ ଗାନ୍ଧୀ ସେବା ସଂଘ କାର୍ଯ୍ୟ ସକ୍କାନ୍ତରେ ଯାଇଥିବା ବେଳେ ସରଦାର ପଟେଲ ତାଙ୍କୁ ଦେଖି କହିଲେ - ତୁମର ଯଦି ମନ୍ତ୍ରୀ ହେବାର ଇଚ୍ଛା ତେବେ ମନ୍ତ୍ରୀ ହୁଅ । ଦାସଜୀଙ୍କ ପଛରେ କାହିଁକି ଲାଗିଛ?


କିଶୋରଲାଲ ମଶ୍ରୁବାଲା

ଗୋପବାବୁ ଏ କଥା ଶୁଣି ତାଙ୍କୁ କହିଲେ - "ଆପଣ ମୋତେ ଚିହ୍ନନ୍ତି ନାହିଁ । ମୋ ବିଷୟରେ କିଶୋରଲାଲ ମଶ୍ରୁବାଲାଙ୍କୁ ଆପଣ ପଚାରିବେ" । ଏତିକି ମାତ୍ର କହି ସେ ସେ ସ୍ଥାନ ଛାଡ଼ି ଚାଲି ଆସିଲେ । ପରେ ସରଦାର ପଟେଲ ଓ କିଶୋରଲାଲ ମଶ୍ରୁବାଲା ( ସଭାପତି, ଗାନ୍ଧୀ ସେବା ସଂଘ)ଙ୍କ ମଧ୍ୟରେ ଆଲୋଚନା ହେବା ଉତ୍ତାରୁ ସରଦାର ଦୁଃଖ ପ୍ରକାଶ କରି ଗୋପବାବୁଙ୍କୁ ଚିଠି ଲେଖିଲେ । ଗୋପବାବୁ ତୁରନ୍ତ ସେ ଚିଠିକୁ ନଷ୍ଟ କରି ଦେଲେ ।

୧୯୩୭ ମସିହାରେ ହୁଦଲିଠାରେ ଗାନ୍ଧୀ ସେବା ସଂଘର ବାର୍ଷିକ ଅଧିବେଶନ ହେଲା । ଓଡ଼ିଶାରୁ


ପଣ୍ଡିତ କୃପାସିନ୍ଧୁ ହୋତା

ପଣ୍ଡିତ କୃପାସିନ୍ଧୁ ହୋତା, ଆଚାର୍ଯ୍ୟ ମହାଶୟ, ବିନୋଦ କାନୁନଗୋ, ରମା ଦେବୀ ଓ ଗୋପବାବୁ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ପଣ୍ଡିତ ହୋତା ମହାଶୟ ଓଡ଼ିଶାକୁ ଏହି ସମ୍ମିଳନୀ ଡାକିବାକୁ ପ୍ରସ୍ତାବ ଦେଲେ । ଗାନ୍ଧୀଜୀଙ୍କୁ ପଚରା ହେଲାରୁ ସେ ସମ୍ମିଳନୀ ଓଡ଼ିଶାକୁ ଡାକିବାକୁ ଉତ୍ସାହିତ କଲେ । ସରଦାର ଏହା ଶୁଣି ନିରାଶାବାଣୀ ଶୁଣାଇ କହିଲେ ଯେ ଓଡ଼ିଶାରେ କେବେହେଁ କୌଣସି ନିଖିଳ ଭାରତୀୟ ସ୍ତରର ସମ୍ମିଳନୀ ହୋଇ ନାହିଁ । ତୁମେମାନେ ଏହାକୁ ମୁଣ୍ଡ ଲଗାଇ ପାରିବ ତ? ବାବୁ ରାଜେନ୍ଦ୍ର ପ୍ରସାଦ ହସି ହସି କହିଲେ - ଆପଣ ମାନେ ଜାଣି ରଖନ୍ତୁ ମୁଁ ଆପଣମାନଙ୍କ ଖାତିରରେ ଏ ବର୍ଷ ବିହାର ପକ୍ଷରୁ ଆମନ୍ତ୍ରଣ ଦେବି ନାହିଁ । ଓଡ଼ିଶାରେ ସମ୍ମିଳନୀ ହେବା ସ୍ଥିର ହେଲା ।

ଗାନ୍ଧୀ ସେବା ସଂଘ ସମ୍ମିଳନୀ ରେଳ ଷ୍ଟେସନ ନିକଟରେ କୌଣସି ଗାଁରେ ହେବା କଥା । ତେଣୁ ଡେଲାଂଗ ଷ୍ଟେସନ ନିକଟସ୍ଥ


ସୁନାମଣି ଦେବୀ

ବେରବୋଇ ଗାଁରେ ଏହି ସମ୍ମିଳନୀ ହେବା ସ୍ଥିର ହେଲା । ହୋତା ମହାଶୟ ଓ ସୁନାମଣି ଦେବୀ ୧୯୩୪ରୁ ସେଠାରେ "ସେବା କୁଟୀର" ସ୍ଥାପନ କରି ଗ୍ରାମ ଉନ୍ନୟନ କାମ କରୁଥିଲେ ।

ଗାନ୍ଧୀଜୀ ନିୟମ କରି ଦେଇ ଥିଲେ ଯେ ଗାନ୍ଧୀ ସେବା ସଂଘ ସମ୍ମିଳନୀ ଯେଉଁ ଗ୍ରାମରେ ହେବ ତାହାର ୫ ମାଇଲ ବ୍ୟାସାର୍ଦ୍ଧ ମଧ୍ୟରେ ଉତ୍ପନ୍ନ ହେଉଥିବା ଶସ୍ୟ ଓ ପନିପରିବା ହିଁ ସମ୍ମିଳନୀ ପାଇଁ ବ୍ୟବହୃତ ହେବ । ତେଣୁ ଏ ସମ୍ମିଳନୀର ପୂର୍ବ ପ୍ରସ୍ତୁତି ଏକ ଗଠନମୂଳକ କାର୍ଯ୍ୟରେ ପରିଣତ ହେଲା । ୫ ମାଇଲ ବ୍ୟାସାର୍ଦ୍ଧ ମଧ୍ୟରେ ଥିବା ଗାଁ ମାନଙ୍କରେ କେତେ ଗର୍ଭିଣୀ ଗାଈ ସମ୍ମିଳନୀ ବେଳକୁ ବାଛୁରୀ ପକେଇବେ ତାହାର ତଥ୍ୟ ସଂଗ୍ରହ ହେଲା । ଲୋକଙ୍କୁ ପନିପରିବା, ଶାଗ ଆଦି କରିବା ପାଇଁ ଉତ୍ସାହିତ କରାଗଲା ଓ ବିଭିନ୍ନ ପ୍ରକାର ବିହନ ଯୋଗାଇ ଦିଆଗଲା । ସମଗ୍ର ଓଡ଼ିଶାର ହସ୍ତଶିଳ୍ପ ଓ କୁଟୀର ଶିଳ୍ପର ପ୍ରଦର୍ଶନୀ ପାଇଁ ଆୟୋଜନ ଚାଲିଲା । ପ୍ରଦର୍ଶନୀ ଉଦ୍-ଘାଟନ କରି ଗାନ୍ଧୀଜୀ କହିଲେ :- " XXX प्रदर्शनी देखकर मैं आया तो दिलमें प्रधान विचार यहि आया कि किसी न किसी तरहसे अगर उत्कलके लोग आलस्य छोडकर उद्यम करें तो उत्कलवासीयों को कंगाल रहनेकी आवश्यकता नहिं होगी । कितने उद्योग उत्कलमें हो सकते हैं, इसका पता प्रदर्शनी देखनेसे लगपाता है । जितने लोग यहां आ गये हैं वे एकबार नहिं अनेक बार प्रदर्शनी देखें " ।



ପ୍ରଦର୍ଶନୀରେ ଗାଂଧୀଜୀ

ସମ୍ମିଳନୀ ବିଷୟରେ ସଂଘର କାର୍ଯ୍ୟ ବିବରଣୀରେ ଯେଉଁ ମତାମତ ଦିଆ ହୋଇଥିଲା ତାହାର କେତେକାଂଶ ହେଉଛି:-

हुद्‌ली का अनुत्साही वायुमंडल और् उत्कल की कंगाल हालत को सामने रखते हुए पूज्य बापूजीकी शर्त्तको मंजुर रखकर श्री गोपबाबु और् श्री रमादेवी का सम्मेलन के लिए आग्रहपूर्बाक आमन्त्रण देना एक साहस ही (???) प्रतीत होता था । लेकिन उन्होने आत्मविश्वासपूर्वक निमन्त्रण दिआ और् बापूजी भी आशामय शव्दोंसे उन्हीके पक्षमें अपना वजन डाल दिआ था । डेलांग सम्मेलन का अपूर्व सफलता इस आत्मविश्वास और आशा की यथार्थता का प्रत्यक्ष प्रमाण था । XXX यह उत्कल की संगठन शक्ति के लिए गौरव की बात है । दूसरे प्रान्तों के लिए उत्कल एक शानदार उदाहरण पेश किया है ।



ସମ୍ମିଳନୀରେ ଗୋପବାବୁ

ସେତେବେଳେ ଉତ୍କଳ ପ୍ରଦେଶ କଂଗ୍ରେସ ମଧ୍ୟରେ ଦ୍ୱିମତ ସୃଷ୍ଟି ହୋଇ ଦୁଇଟି ସମାନ୍ତରାଳ ପ୍ରାଦେଶିକ କଂଗ୍ରେସ କମିଟି ହରେକୃଷ୍ଣ ମହତାବ ଓ ପଣ୍ଡିତ ନୀଳକଂଠ ଦାସଙ୍କ ସଭାପତିତ୍ୱରେ ଗଢ଼ା ହୋଇଥାଏ । ଏହି କଳି ଭାଂଗିବା ପାଇଁ କଂଗ୍ରେସ ହାଇ କମାଣ୍ଡ ସର୍ଦ୍ଦାର ପଟେଲ, ବାବୁ ରାଜେନ୍ଦ୍ର ପ୍ରସାଦ ଓ ମୌଲାନା ଆଜାଦଙ୍କର ବୈଠକ ଡେଲାଂଗରେ ହେଲା । ମୌଲାନା ଆଜାଦ ଗାନ୍ଧୀ ସେବା ସଂଘର ସଦସ୍ୟ ନ ଥିଲେ । ସେ ଖାସ ଏହି କଳି ଭାଂଗିବା ପାଇଁ ଡେଲାଂଗ ଆସି ଥିଲେ । ସର୍ବ ସମ୍ମତିରେ ନିଷ୍ପତ୍ତି ହେଲା ଯେ ଗୋପବନ୍ଧୁ ଚୌଧୁରୀ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେବେ ଏବଂ ସମାନ୍ତରାଳ ପ୍ରାଦେଶିକ କମିଟି ଦୁଇଟି ବିସର୍ଜିତ ହେବ । ତଦନୁସାରେ ଗୋପବାବୁ ପୁଣି ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେଲେ ।

ପୁଣି କଂଗ୍ରେସ ମଧ୍ୟରେ କଳିଗୋଳ ଭାଂଗିବା ପାଇଁ ଓଡ଼ିଶାରେ କଂଗ୍ରେସ ପକ୍ଷରୁ ଯେଉଁ Tribunal ଗଢ଼ା ହୋଇଥିଲା ସେଥିରେ ଗୋପବାବୁ ଓ ଆଚାର୍ଯ୍ୟ ମହାଶୟଙ୍କୁ ଟ୍ରାଇବୁନାଲ ନିଯୁକ୍ତ କରା ଯାଇଥିଲା ।




ଗୋପବନ୍ଧୁ ଚୌଧୁରୀଙ୍କ ଅଙ୍କା ଚିତ୍ର

୧୯୪୦ରେ ଯେଉଁ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେଲା; ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ଗୋପବାବୁ ଓ ରମା ଦେବୀ ସେ ସତ୍ୟାଗ୍ରହରେ ଯୋଗ ଦେଲେ ନାହିଁ । ମୌଳିକ ଶିକ୍ଷା ଓ ଗାନ୍ଧୀ ସେବା ସଂଘର ବିଭିନ୍ନ ରଚନାତ୍ମକ କାର୍ଯ୍ୟର ତତ୍ତ୍ୱାବଧାନ, ଖଦୀ-ଯାତ୍ରୀ ସଂଗଠନ ଆଦିରେ ସେମାନେ ଅଧିକ ସମୟ ଦେଲେ । ହିନ୍ଦୁସ୍ତାନୀ ତାଲୀମୀ ସଂଘ ଗଢ଼ାହେଲାରୁ ସେ ତାର ସଦସ୍ୟ ହେଲେ ।

ନିଖିଳ ଭାରତ ଚରଖା ସଂଘ (ଉତ୍କଳ ଶାଖା)ର ସଂପାଦକ ହେବା ଦାୟିତ୍ୱ ମଧ୍ୟ ଏହି ସମୟରେ ଗୋପବାବୁଙ୍କ ଉପରେ ପଡ଼ିଲା । ତେଣୁ ଚରଖା ସଂଘର ଉତ୍ପାଦନ କେନ୍ଦ୍ର ଓ ବିକ୍ରୀ କେନ୍ଦ୍ରର ଦେଖାଶୁଣା କାମରେ ମଧ୍ୟ ସେ ସମୟ ଦେଲେ । ଏ ସବୁ କାମ ତୁଲାଇବା ସଂଗେ ସଂଗେ ଗୋପବାବୁ ନିୟମିତ ମୂଲିଆଙ୍କ ସହିତ ଚାରି ବା ଛଅ ଘଣ୍ଟା ମାଟି ହଣା ଭଳି କଠିନ ପରିଶ୍ରମ କରୁଥିଲେ ଏବଂ ବିଭିନ୍ନ ପ୍ରକାର ପନିପରିବା, ଶସ୍ୟ, ବିଶେଷ କରି ଓଡ଼ିଶା ମାଟି ପାଇଁ ଉପଯୋଗୀ କପା ଚାଷର ପରଖରେ ସମୟ ଦେଉଥିଲେ । ସାଧାରଣ ଚାଷୀ ମୂଲିଆଙ୍କ ସହିତ ଅଧିକରୁ ଅଧିକ ଏକରୂପ ହେବା ପାଇଁ ସେ ନିରବଚ୍ଛିନ୍ନ ଉଦ୍ୟମ କରୁଥିଲେ ।



ଗୁଣନିଧି ବାବୁ, ଗୋପବାବୁ ଓ ଶ୍ରୀମାନ୍ସ୍‌ଫିଲ୍ଡ

୧୯୪୨ ଫେବୃୟାରୀ ୨୫ରେ ତାଙ୍କର ଝିଅ ଅନ୍ନପୂର୍ଣ୍ଣାର ବିବାହ ସେବାଘରେ ହେଲା । ଏହା ଅସବର୍ଣ୍ଣ ବିବାହ । ଏହା ଛଡ଼ା ବିବାହରେ ବାଜା,

ଗହଣା, ଯୌତୁକ ଆଦି ନ ଥିଲା । ୧୯୪୨ ମସିହା ଅଗଷ୍ଟ ନଅ ତାରିଖରେ ତାଙ୍କୁ ଗିରଫ କରାଯାଇ ଅଟକ ବନ୍ଦୀ କରାଗଲା । ବ୍ରହ୍ମପୁର ଜେଲ୍ ରେ ରହିବା ସମୟରେ ସେ ସୂତାକଟା, ଲୁଗାବୁଣା, ଚକିପେଷା, ରୋଷେଇ ଆଦି କାମ କରିବା ସଂଗେ ସଂଗେ ଚାଷୀ ମୂଲିଆ ଗନ୍ଧୀ, ଗାନ୍ଧୀ ଓ ଉତ୍କଳ ଆଦି ବହି ଲେଖିଲେ ଏବଂ କେତେକ ଗାନ୍ଧୀ ସାହିତ୍ୟ ଅନୁବାଦ କଲେ । ଜେଲ୍ ରେ ସହକର୍ମୀମାନଙ୍କ ସହିତ ରଚନାତ୍ମକ କାମର ଅନୁଭୂତି

ବିଷୟରେ ସେ ବରାବର ସାମୂହିକ ଚର୍ଚ୍ଚା ଆଲୋଚନା କରୁଥିଲେ । ୧୯୪୪ ସେପ୍ଟେମ୍ବର ମାସରେ ତାଙ୍କୁ ଖଲାସ କରାଯାଇ କେନ୍ଦ୍ରାପଡ଼ା ସବ୍ ଡିଭିଜନ୍ ରେ ନ ପଶିବା ପାଇଁ ତାଙ୍କ ଉପରେ ନିଶେଧାଜ୍ଞା ଜାରୀ କରାଗଲା । ସେହି ନିଶେଧାଜ୍ଞା ଅମାନ୍ୟ କରି ସେ ପୁଣି ଗିରଫ ହେଲେ ଓ ବିଚାରରେ ତିନି ମାସ ଦଣ୍ଡ ପାଇଲେ । ପୁଣି ଖଲାସ ହୋଇ ସେ ପୁଣି ନିଷେଧାଜ୍ଞା ଅମାନ୍ୟ କରି ପୁଣି ତିନି ମାସ ଜେଲ୍ ଦଣ୍ଡ ପାଇଲେ । ୧୯୪୫ ମସିହା ଅଧା ଅଧି ବେଳକୁ ସେ ଶେଷଥର ଜେଲ୍ ରୁ ଖଲାସ ହେଲେ । ସରକାର ମଧ୍ୟ ନିଶେଧାଜ୍ଞା ଉଠାଇ ଦେଲେ ।



ଶରତ୍ ଚନ୍ଦ୍ର ମହାରାଣା



ଜେଲ୍ ରୁ ବାହାରି ସେ ଅରଂଗାବାଦର ଗୋବର୍ଦ୍ଧନ ପୁହାଣଙ୍କ ଦାଣ୍ଡଘରେ ସସ୍ତ୍ରୀକ ରହି ପୁଣି ମୌଳିକ ଶିକ୍ଷା, ଖଦୀ ଆଦି ଗ୍ରାମ ସଂଗଠନ କାମରେ ଲାଗିଲେ । ପ୍ରତିଦିନ ମୂଲିଆଙ୍କ ସହିତ ବିଲରେ ଖଟିବା ମଧ୍ୟ ଚାଲିଥାଏ ।

୧୯୪୬ ରେ ତାଙ୍କ ପୁଅ ମନମୋହନର ବିବାହ ସେବାଗ୍ରାମଠରେ ଅନୁଷ୍ଠିତ ହେଲା । ବୈଦିକ ରୀତିରେ ବରକନ୍ୟା ବୃକ୍ଷରୋପଣ, ସୂତ୍ରଯଜ୍ଞ, ଗୀତାପାଠ, ଗୋସେବା, ଜଳଦାନ ଆଦି ପଂଚଯଜ୍ଞ ସମାଧା କରି ବିବାହ କଲେ । ଏହା ଏକ୍ ଆନ୍ତର୍ପ୍ରାଦେଶିକ ଓ ଅସବର୍ଣ୍ଣ ବିବାହ । ଏଥିରେ ଗହଣା, ଯୌତୁକ, ଭୋଜୀଭାତ ଆଦି ନ ଥିଲା । ବିବାହ ସମାଧା ହେବା ପରେ **ଆଶା ଦେବୀ** ଉପସ୍ଥିତ ଭଦ୍ରମଣ୍ଡଳୀ ସରଦାର ପଟେଲ, ବାବୁ ରାଜେନ୍ଦ୍ର ପ୍ରସାଦ, ଆର୍. ଆର୍. ଦିବାକର, ଜି. ରାମଚନ୍ଦ୍ରନ୍ ଆଦିଙ୍କୁ କଂଚା ଚିନାବାଦାମ ଦାନା ଓ ଗୁଡ଼ ଟିକିଏ ଟିକିଏ ବାଣ୍ଟି ଦେଲେ ।



ଚୌଧୁରୀ ପରିବାର ୧୯୪୬

(ଜାମାତା, ପୁଅ, ଝିଅ, ବୋହୂ, ଅଣନାତି ତଥାଗତ, ଅରସ୍ତୁ (୨୦୦୧))



ମୌଳିକ ଶିକ୍ଷାରେ ମାର୍ଜିତ ମନୋରଂଜନ ଉପରେ ବିଶେଷ ଗୁରୁତ୍ୱ ଦିଆ ଯାଇଛି । ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟର ଛାତ୍ର ଛାତ୍ରୀଙ୍କୁ ଦାଣ୍ଡିଆ ନାଚ ଶିଖାଇବା ପାଇଁ ଗୋପବାବୁ **ବୈକୁଣ୍ଠ ନାଥ ମହାନ୍ତିଙ୍କୁ** ଉଆର୍ଦ୍ଧା ପଠାଇ ତାଲିମ ଦିଆଇଲେ । ବୈକୁଣ୍ଠ ବାବୁ ସେଠାରୁ ତାଲୀମ ପାଇ ଆସି ମୌଳିକ ବିଦ୍ୟାଳୟର ଛାତ୍ର ଛାତ୍ରୀ ଓ ଆଖପାଖ ଗାଁର ଯୁବକମାନଙ୍କୁ ଦାଣ୍ଡିଆ ନାଚ ସହ ଜାତୀୟ ସଂଗୀତ

ଶିଖାଇବା ଫଳରେ ଏକ ପ୍ରଭାବଶାଳୀ ପରିବେଶ ସୃଷ୍ଟି ହେଲା ।



୧୯୪୭ ଅଗଷ୍ଟ ପନ୍ଦରରେ ଦେଶ ସ୍ୱାଧୀନ ହେଲା । ସେଦିନ ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟ କସ୍ତୁରବା ତାଲୀମ ଶିବିର, କନ୍ୟାଶ୍ରମ ଆଦିରେ କ୍ଷୀରି ଖେଚିଡ଼ି ହୋଇ ସହ ଭୋଜନର କାର୍ଯ୍ୟକ୍ରମ ରଖା ଗଲା । କିନ୍ତୁ ଗୋପବାବୁ ସେ ଦିନ ସସ୍ତ୍ରୀକ ନିର୍ଜଳା ଉପବାସ କଲେ । ଦେଶବାସୀ ଏ ସ୍ୱରାଜ୍ୟର ଗୁରୁତ୍ୱ ଉପଲବ୍ଧି କରି ଦାୟିତ୍ୱ ସମ୍ପନ୍ନ ସ୍ୱାଧୀନ ନାଗରିକର କର୍ତ୍ତବ୍ୟ ତୁଲାଇବାରେ କିପରି ତତ୍ପର ହେବେ, ସେଥିପାଇଁ ସେ ବହୁତ ଚିନ୍ତିତ ଦେଖା ଯାଉଥିଲେ ।



ବୈକୁଣ୍ଠ ନାଥ ମହାନ୍ତି



ଗୋପବନ୍ଧୁ ଚୌଧୁରୀଙ୍କ ଅଙ୍କା ଚିତ୍ର



ବୋହୂ ସୁମିତ୍ରା, ବଡ଼ ଦୁଇନାତି, ନାତୁଣୀ, ରମାଦେବୀ ଓ ମନମୋହନ ସହ

ଚରଖା ସଂଘର ନବ ସଂସ୍କରଣ ଯୋଜନା ଅନୁସାରେ ୨୧ ।୮।୪୭ରେ ଉତ୍କଳ ଖଦୀ ମଣ୍ଡଳ ଗଠିତ ହେଲା । ଉତ୍କଳ ନବଜୀବନ ମଣ୍ଡଳ ମଧ୍ଯ ଆଦିବାସୀ ସେବା କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ଗଠିତ ହେଲା ।

୧୯୪୮ ଜାନୁଆରୀ ୩୦ରେ ଗାନ୍ଧୀଜୀଙ୍କର ଦେହାନ୍ତ ହେଲା । ଉଆର୍ଦ୍ଧା ଅଭିମୁଖେ ଯାଉଥିବା ବେଳେ ଗୋପବାବୁ ବାଟରେ ଏ ଖବର ପାଇ ବରୀ ଫେରି ଆସିଲେ ।ପ୍ରାର୍ଥନା ସଭାରେ ସେ ରବୀନ୍ଦ୍ରନାଥଙ୍କ ଶିଶୁ ତୀର୍ଥ ପଢ଼ି ଶୁଣାଇଲେ -

" ସଂଶୟେ ତାକେ ଆମରା ଅସ୍ୱୀକାର କରେଛି
କ୍ରୋଧେ ଆମରା ତାକେ ହନନ କରେଛି
ପ୍ରେମେ ଆମରା ଏଖନ ତାକେ ଗ୍ରହନ କରବୋ
କେନନା ମୃତ୍ୟୁର ଦ୍ୱାରା ସେ ଆମାଦେର
ସକଲେର ଜୀବନେର ମଧ୍ୟେ ସଂଜୀବିତ
ସେଇ ମହା ମୃତ୍ୟୁଂଜୟ"

ଯେଉଁ ବସ୍ତୁ ପ୍ରତି ବିଶେଷ ଆସକ୍ତି ରହିଛି, ସେପରି ଗୋଟିଏ ବସ୍ତୁ ଛାଡ଼ିବା ପାଇଁ ସେ ସୂଚେଇଲେ ଏବଂ ନିଜେ ମଧ୍ଯ ନିଜର ଗୋଟିଏ ପ୍ରିୟ ବସ୍ତୁ ତ୍ୟାଗ

କଲେ ।

୧୩,୧୪, ୧୫ ମାର୍ଚ୍ଚ ୧୯୪୮ ମସିହାରେ ସେବାଗ୍ରାମ ଠାରେ ଅନୁଷ୍ଠିତ ଏକ ନିଖିଳ ଭାରତୀୟ କର୍ମୀ ସମ୍ମିଳନୀରେ ବିନୋବାଜୀ " ଲକ୍ଷ୍ୟ ଶୁଦ୍ଧ ହେଲେ ପନ୍ଥା ମଧ୍ୟ ଶୁଦ୍ଧ ହେବା ଦରକାର" ନୀତିରେ ବିଶ୍ୱାସ କରୁଥିବା ସର୍ବୋଦୟୀଙ୍କର ଭାତୃଭାବ ରକ୍ଷା ଉଦ୍ଦେଶ୍ୟରେ ଏକ ସଂସ୍ଥା ଗଢ଼ିବା ପ୍ରସ୍ତାବ ରଖିବାରୁ ସର୍ବୋଦୟ ସମାଜ ସ୍ଥାପିତ ହେଲା । ବିଭିନ୍ନ ପ୍ରକାର ସର୍ବୋଦୟ ବିଚାରକୁ କାର୍ଯ୍ୟାନ୍ୱିତ କରୁଥିବା ସଂସ୍ଥାକୁ ଘେନି ସର୍ବ ସେବା ସଂଘ ଗଠିତ ହେଲା । ୧୯୫୦ ରେ ଏହି ସର୍ବୋଦୟ ସମାଜର ବାର୍ଷିକ ସମ୍ମିଳନୀ ଅନୁଗୁଳ ଠାରେ ଅନୁଷ୍ଠିତ ହେଲା । ସମ୍ମିଳନୀ ସଂଲଗ୍ନ ପ୍ରଦର୍ଶନୀରେ ଓଡ଼ିଶାର ଐତିହାସିକ ଚିତ୍ରାବଳୀ ଓଡ଼ିଶାର ଖ୍ୟାତନାମା ଚିତ୍ରକରଙ୍କ ଦ୍ୱାରା ପ୍ରସ୍ତୁତ କରାଇବା ଅଭିନବ ପରିକଳ୍ପନା ଗୋପବାବୁଙ୍କର ଥିଲା । କଥାବସ୍ତୁ ପଣ୍ଡିତ ନୀଳକଂଠ ଦାସଙ୍କ ଦ୍ୱାରା ପ୍ରସ୍ତୁତ କରାଗଲା । ଏହି ବର୍ଷ ଗୋପବାବୁ ସର୍ବୋଦୟ ସମାଜର ସଂପାଦକ ନିର୍ବାଚିତ ହେଲେ ଏବଂ ଏହି କାମରେ ଭାରତ ସାରା ଗସ୍ତ କଲେ । ଏହି ସମୟରେ "ଗୁରୁଜୀକା ଚିଟ୍ ଠୀ" ନାମକ ଖଣ୍ଡିଏ ପତ୍ରିକା ମଧ୍ୟ ସେବାଗ୍ରାମରୁ ତାଙ୍କ ସଂପାଦନାରେ ବାହାରୁ ଥିଲା ।

୨୧ ।୮ ।୧୯୪୮ ରେ ଆଦିବାସୀମାନଙ୍କ



ସାରଂଗଧର ଦାସ

ବିକାଶ ଓ ସେବା ଉଦ୍ଦେଶ୍ୟରେ **ଠକ୍କର ବାପା**, ଆଚାର୍ଯ୍ୟ ମହାଶୟ, ମାଳତୀ ଚୌଧୁରୀ, **ସାରଂଗଧର ଦାସ**ଙ୍କ ସହିତ ଆଲୋଚନା କରି ଉତ୍କଳ ନବଜୀବନ ମଣ୍ଡଳ ଗଠନ ପାଇଁ ଏକ ବୈଠକ ସ୍ୱରାଜ୍ୟ ଆଶ୍ରମରେ ସେ ଆବାହକ ହୋଇ ଡାକିଲେ ଏବଂ ୨୪ ।୧୦ ।୧୯୪୮ ରେ ଗୋପବାବୁଙ୍କ ସଂପାଦକତ୍ୱରେ ଏହି ଅନୁଷ୍ଠାନ ଗଠିତ ହେଲା । ଏହି ଅନୁଷ୍ଠାନଟି ଚଳାଇବା ପାଇଁ ସେ ନିଜେ ରାମଚନ୍ଦ୍ରପୁରରେ ଏକ କର୍ମୀ ତାଲୀମ ଶିବିର ଚଳାଇଲେ ।

୧୯୫୦ ମସିହା ଜୁଲାଇ ମାସରେ ସେ ସର୍ବୋଦୟ ସମାଜ ସଂପାଦକ ପଦରୁ ଇସ୍ତଫା ଦେଲେ । ଦେଶର ସ୍ୱରାଜ୍ୟୋତ୍ତର ପରିସ୍ଥିତି ଦେଖି ସେ ବିଶେଷ ଉଦ୍‌ବିଗ୍ନ ହୋଇ ସବୁବେଳେ ଚିନ୍ତିତ ରହୁଥିଲେ ।



ବେଳେ ବେଳେ ସେ ଏତେଦୂର ବିଚଳିତ ହେଉଥିଲେ ଯେ " ଅହିଂସା ଦ୍ୱାରା କିଛି ହୋଇ ପାରିବ ନାହିଁ " ବୋଲି ତାଙ୍କ ପାଟିରୁ ବାହାରି ପଡୁଥିଲା । ଏହି ସମୟରେ ସେ ଓ ତାଙ୍କର କେତେକ ସହକର୍ମୀ " ଆମେ କାହାରିକୁ ଭୋଟ୍ ଦେବୁ ନାହିଁ" ଶିରୋନାମାରେ ଏକ ବିବୃତ୍ତି ଛାପିଥିଲେ । ଭୂଦାନ ଆନ୍ଦୋଳନ ଆରମ୍ଭ ହେବା ପରେ ୨୫ ଡିସେମ୍ବର ୧୯୫୧ ରେ ସେ ସସ୍ତ୍ରୀକ ବରୀରୁ ପଦଯାତ୍ରା ଆରମ୍ଭ କରି କଟକର ସୌରିକ ବାଟେ ଢେଙ୍କାନାଳ, ପୁରୀ, ଗଂଜାମ, କୋରାପୁଟ, କଳାହାଣ୍ଡି, ବଲାଂଗିର, ସମ୍ବଲପୁର ଜିଲ୍ଲାରେ ବୁଲିଲେ । ପରୀକ୍ଷା ସ୍ୱରୂପ ଭୂଦାନ ବିଚାର ଲୋକଙ୍କ ଆଗରେ ଥୋଇବାରୁ ଲୋକେ ସେ ବିଚାରକୁ ଗ୍ରହଣ କରି ଭୂଦାନ ଦେବାରୁ ତାଙ୍କର ହୃଦ୍‌ବୋଧ ହେଲା ଯେ ଏହି ବାଟରେ ଅର୍ଥନୈତିକ ସମସ୍ୟାର ସମାଧାନର ସମ୍ଭାବନା ଅଛି ।

କଟକକୁ ପଦଯାତ୍ରା କରି ଆସି ସେ ଖଣ୍ଡସାହିକୁ ଏକ କର୍ମୀ ବୈଠକ ଡ଼ାକିଲେ । ୨୯ ।୫ ।୫୨ ରେ ଖଣ୍ଡସାହିରେ ବେସରକାରୀ ଭୂଦାନ ଯଜ୍ଞ ସମିତି ଗଠିତ ହୋଇ ଓଡ଼ିଶାରେ ସଂଗଠିତ ଭାବେ ଭୂଦାନ ଆନ୍ଦୋଳନ ଆରମ୍ଭ ହେଲା ।ଗୋପବାବୁ ପୁଣି ବାଲେଶ୍ୱର- ମୟୁରଭଂଜ - କେନ୍ଦୁଝର- କଟକ- ପୁରୀ ଜିଲ୍ଲାରେ ପାଦରେ ଚାଲି ଚାଲି ବୁଲି ଭୂଦାନ କାମ କଲେ ।

୧୯୫୪ ରେ ସରକାରୀ ଭୂଦାନ ଯଜ୍ଞ ସମିତି ଗଠିତ ହେଲା । ଗୋପବାବୁ ବିନୋବାଜୀଙ୍କ ପ୍ରସ୍ତାବ ଅନୁସାରେ ଏହି ସରକାରୀ ଭୂଦାନ ଯଜ୍ଞ ସମିତିର ସଭାପତି ହେଲେ ।

୨୬ ।୧ ।୧୯୫୫ ରେ ଓଡ଼ିଶାରେ **ବିନୋବାଜୀ**ଙ୍କ ପଦଯାତ୍ରା ଆରମ୍ଭ ହେଲା । ଏହାର ପ୍ରଧାନ ଉଦ୍ୟୋକ୍ତା ଥିଲେ ଗୋପବାବୁ ।







ଅଜା ନାତି ଖୁସ୍

ବିନୋବା ପଦଯାତ୍ରା : ୧୯୫୫, ପୂର୍ବ ଯାଜପୁର



ବାମରୁ ଗୋପବନ୍ଧୁ ଚୌଧୁରୀ, ମନମୋହନ, ସୁମିତ୍ରା, ରମା ଦେବୀ ଓ ବିନୋବାଜୀ

ବିନୋବାଜୀ ପଦଯାତ୍ରା

ଏହି ବର୍ଷ ପୁରୀରେ ସର୍ବୋଦୟ ସମ୍ମିଳନୀ ଅନୁଷ୍ଠିତ ହେଲା । ଏଥର ସେ ଓଡ଼ିଶାର ସଂସ୍କୃତିକ ଇତିହାସର ଚିତ୍ରାବଳୀ ପ୍ରସ୍ତୁତ କରାଇ ପ୍ରଦର୍ଶନୀରେ ରଖାଇ ଥିଲେ ।



କୋରାପୁଟରେ ୧୯୫୬ ରେ ନିର୍ମାଣ କାମ ଆରମ୍ଭ ହେବା ବେଳେ ଗୋପବାବୁ ମତ ଦେଲେ ଯେ ଆଦିବାସୀଙ୍କର କେବଳ ଆର୍ଥିକ ବିକାଶ ପ୍ରତି ଦୃଷ୍ଟି ଦେଲେ ସେମାନଙ୍କର ଉନ୍ନତି ହେବ ନାହିଁ । ବୈଚାରିକ ଓ ସାଂସ୍କୃତିକ ବିକାଶ ପାଇଁ ମଧ୍ୟ କାମ କରାଯିବା ଉଚିତ ।

ବିନୋବାଜୀ ଓଡ଼ିଶାରୁ ଆନ୍ଧ୍ରରେ ପ୍ରବେଶ କରିବା ପରେ ଗୋପବାବୁ କିଛି ଦିନ କୋରାପୁଟରେ ପଦଯାତ୍ରା କରି ଉପକୂଳବର୍ତ୍ତୀ ଜିଲ୍ଲା ମାନଙ୍କରେ ପୁଣି ପଦଯାତ୍ରା କଲେ ।



ଟଣ୍ଡନ ଓ ବାବା ରାଘବଦାସଂକ ସହ

ମଝିରେ ମଝିରେ ସେ ଦୁଧେଇ ନୂଆଘରେ ରହୁଥାନ୍ତି ଏବଂ ମୂଲିଆଙ୍କ ସଂଗେ ବିଲରେ କାମ କରୁଥାନ୍ତି ।

୧୯୫୭ ବର୍ଷାଦିନରେ ଗୋପବାବୁଙ୍କୁ ଜ୍ୱର ହେଲା । ଜଳ ଚିକିତ୍ସାରେ ସେ ଜ୍ୱର ଭଲ ହେଲା । ଏହି ସମୟରେ ସେ ରବୀନ୍ଦ୍ରନାଥଙ୍କର

"ଏଇ କଥାଟା ଧରେ ରଖିସ୍

ମୁକ୍ତି ତୋରେ ପେତେଇ ହବେ",

ଏବଂ ତୁଳସୀ ଦାସଙ୍କର





କେନ୍ଦୁଝରଠାରେ ମା' ରମାଦେବୀ, ଆଚାର୍ଯ୍ୟ ହରିହର, ପୂଜ୍ୟ ଗୋପବନ୍ଧୁ ଚୌଧୁରୀ, ପଛରେ ସୁହାସିନୀ, ଗୁଣନିଧି ମହାନ୍ତି (୧୯୫୫ କେନ୍ଦୁଝର)

"यह विनति रघुवीर गुसाइँ"

ଅଧିକାଂଶ ସମୟରେ ବୋଲୁଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟରେଟ୍ ଉପାଧିରେ ଭୂଷିତ କରିବାକୁ ଚାହାନ୍ତି ବୋଲି କୁଳପତି ପରିଜା ସାହେବ ପତ୍ର ଲେଖିଲେ । ଗୋପବାବୁ ଉତ୍ତରରେ ଲେଖିଲେ ଯେ ଯେତିକି ଉପାଧି ମୋ ସହିତ ଜୋଡ଼ା ହୋଇଛି ତାହା ଜନଗଣଙ୍କ ସଂଗେ ଏକାତ୍ମ ହେବାରେ ବାଧା ସୃଷ୍ଟି କରୁଛି ବୋଲି ମୁଁ ମନେ କରୁଛି । ପୁଣି ଏ ଉପାଧି ଜୋଡ଼ା ହେଲେ ମୁଁ ଲୋକଙ୍କ ଠାରୁ ଆହୁରି ଦୂରେଇ ଯିବାର ଆଶଙ୍କା ଥିବାରୁ ଏ ଉପାଧି ଗ୍ରାହଣ କରି ପାରିବି ନାହିଁ ।

୧୯୫୭ ଡ଼ିସେମ୍ବର ମାସରେ କଟକରେ ଶହୀଦ ଭବନରେ ଶାନ୍ତିସେନା ଶିବିର ହେଲା । ସେହି ଶିବିର ଉଦ୍‌ଘାଟନ କରି ସେ ତାଙ୍କ ଭାଷଣରେ ମନରୁ ସବୁ ଆଶଙ୍କା ସବୁ ଦ୍ୱନ୍ଦ ପୋଛି ଦେବା କଥା କହି ରବୀନ୍ଦ୍ରନାଥଙ୍କର

"ଜୀବନେ ମରଣେ ନିଖିଲ ଭୁବନେ
ଯଖନ ଯେଥା ଯେ ଯାବେ
ଚିର ଜନମେର ପରିଚିତ ଓହେ
ତୁମିର ଚେନାବେ ସବେ
ତୋମାରେ ଚିନିଲେ ନାଇ କୋନୋରେ
ନାଇ କୋନୋ ବାଧା ନାଇ କେହ ପର
ସବାରେ ମିଶାୟ ତୁମି ରାଜିତେଛ ଦେଖା ଯେନ ସଦା ପାଇ"

ଗୀତଟି ଆବୃତ୍ତି କରିଥିଲେ ।

ଏହି ସମୟରେ ଏକ ଆଧ୍ୟାତ୍ମିକ ପ୍ରେରଣାରେ ସେ ଭରପୂର ଥିବା ପରି ଜଣାପଡୁଥିଲା ।



ବାଲିକୁଦା ଗସ୍ତରେ ଯିବା ପାଇଁ ସେ ଏପ୍ରିଲ ୧୯୫୮ ରେ କଟକ ଆସିଲେ । ସେତେବେଳେ ରମାଦେବୀ ଖୁବ୍ ଅସୁସ୍ଥ ଥିଲେ । ଏକପ୍ରକାର ଜୀବନ-ସଂଶୟ ଉପସ୍ଥିତ ହୋଇ ଥିଲା । ଗୋପବାବୁ ବାଲିକୁଦା ଯିବା ପୂର୍ବରୁ କଟକ ଆସିଲେ ।

୨୮ । ୪ । ୫୮ ସକାଳେ ସେ ଲେଉଟିଆ ଶାଗ କାଟିଲେ । ପଦଯାତ୍ରା କଲାଦିନୁ ସେ ସକାଳେ ପଖାଳ ଖାଉଥିଲେ । ପଖାଳକୁ ସେ କହୁଥିଲେ

"ପଖାଳ ଜାତିର ସଂଜିବନୀ ସୁଧା
ହରେ ଏକାଧାରେ ଭୋକ ଶୋଷ ବାଧା"



ଗୋପବନ୍ଧୁ ଚୌଧୁରୀଙ୍କ ଅଙ୍କା ଚିତ୍ର

ଶାଗ କଟିଲା ବେଳେ "ହରିଭାଇନା°"କ ସଂଗେ ଥଟ୍ଟା ଖେଳିଲେ ଯେ ଯେ ହେତୁ ଗ୍ରହଣୀରେ ମଲେ ଶେଷ ମୁହୂର୍ତ୍ତ ଯାଏ ଚେତା ରହେ, ସେଥି ପାଇଁ ହରିଭାଇନା ଗ୍ରହଣୀରେ ମରିବେ । ଆମେ ସବୁ ତାଙ୍କୁ ସଫା ସୁତୁରା କରିବୁ ଓ ସତ୍-କାର କରିବୁ । ଆଚାର୍ଯ୍ୟ ମହାଶୟ ବାରଣ୍ଡାରେ ବସି ହସୁଥାନ୍ତି ।

ଦୁହେଁ ସାଂଗ ହୋଇ ଭୁବନେଶ୍ୱର ଗଲେ । ଭୁବନେଶ୍ୱର ରାଜପଥରେ ବିଲାତୀ ମଦ ପାଇଁ ଯେଉଁ ଆକର୍ଷକ ବିଜ୍ଞାପନ ଦିଆ ଯାଇଥିଲା, ତାକୁ ଦେଖି ସେ ଅତ୍ୟନ୍ତ ମର୍ମାହତ ହେଲେ ।

ତତ୍-ପୂର୍ବରୁ **ବିଜୁବାବୁ ପବିତ୍ରବାବୁ**ଙ୍କ ଭିଡ଼ା ଓଟରା ପ୍ରକରଣର ବର୍ଣ୍ଣନା ଶୁଣି ସେ କ୍ଷୁବ୍ଧ ହୋଇଥିଲେ । କଂଗ୍ରେସ ସରକାର ମଦକୁ ଏପରି ବିଜ୍ଞାପିତ ହେବାକୁ ଦେବାଟାକୁ ସେ ଅସହ୍ୟ ବୋଧ କଲେ । **ସାଧୁ ଚରଣ ମହାନ୍ତି** (ନାଗେଶ୍ୱର ଟାଂଗୀ)ଙ୍କ ଘରେ ଖାଇ ସେମାନେ କଟକ ଫେରିଲେ । ଆଚାର୍ଯ୍ୟ ମହାଶୟ ଚାହା ଖାଇଲେ । ଗୋପବାବୁ **ଇନ୍ଦିରା ଦେବୀ (ମିଶ୍ର)** ତାଙ୍କ ପାଇଁ ସାଇତି ରଖିଥିବା ଚଣ୍ଡି ଭୋଗ ଖାଇଲେ ।



ଈଶ୍ୱରଲାଲ୍ ବ୍ୟାସଙ୍କ ସହ



ଫକୀର ମିଶ୍ର ଓ ଇନ୍ଦିରା ଦେବୀ

ଏହି ସମୟରେ ଡକ୍ଟର **ରବି ଘୋଷ** ଆସିବାରୁ ସେ ତାଙ୍କୁ କହିଲେ ଓଡ଼ିଶା ମନ୍ତ୍ରିମଣ୍ଡଳରେ କେତେଜଣ ମଦ୍ୟପ ଅଛନ୍ତି ମୋତେ ତୁମେ ଗଣିକରି କହିବ ।

ଆଚାର୍ଯ୍ୟ ମହାଶୟ ଓ ଗୋପବାବୁ ପ୍ରାର୍ଥନା ପରେ ଯଥା ସମୟରେ ଶୋଇଲେ । ଅସୁସ୍ଥା ରମାଦେବୀଙ୍କୁ କୋରାମିନ୍ ଦିଆ ଯିବା ପରେ ସେ ଓ ଶୁଶ୍ରୁଷାକାରିଣୀ ଶୋଇବା ଯୋଗାଡ଼ କରିବାକୁ ଗଲେ । ରାତି ପ୍ରାୟ

ଏଗାରଟା ବେଳେ ଗୋପବାବୁ ପାଇଖାନକୁ ଗଲେ । ଫେରି ଆସି ତାଙ୍କ ଝିଅକୁ ବୁଢ଼ୀ ବୁଢ଼ୀ ଡାକିଲେ । ତାଙ୍କ ଡାକ ଶୁଣି **କୃଷ୍ଣପ୍ରିୟା ଦାସ**,



କୃଷ୍ଣପ୍ରିୟା ଦେବୀ

**ଅନ୍ନପୂର୍ଣ୍ଣା ମହାନ୍ତି** ଓ ତାଙ୍କ ଝିଅ ତାଙ୍କ ପାଖକୁ ଯାଇ ଦେଖିଲେ ପ୍ରାର୍ଥନା ହେବା ବାରଣ୍ଡାରେ ସେ ବସିଛନ୍ତି । ସେ କହିଲେ " ମୋତେ ଶ୍ୱାସ ହେଉଛି । ରାଜେନ୍ଦ୍ର ବାବୁ, କିଶୋରଲାଲ ଭାଇଙ୍କୁ ଏହିପରି ଶ୍ୱାସ ହେବାର ମୁଁ ଦେଖିଛି । ମୁଁ ସାଧୁବାବୁଙ୍କ ଘରେ ଆମ୍ବ ଖାଇବା ହେତୁ ବୋଧେ ଶ୍ୱାସ ହେଲା ।" କୃଷ୍ଣପ୍ରିୟା ଦାସ ପିଠିରେ ହାତ ମାରିଲାରୁ ଦେଖାଗଲା ତୋରାଣି ନିଗିଡ଼ା ଝାଳ ବହି ଯାଉଛି । ସେ ଡାକ୍ତର ଡାକ୍ତର ପାଟି କଲେ । ଗୋପବାବୁ ଡାକ୍ତର ଡ଼ାକିବାକୁ ମନା କରି ପାଣି ଟବ୍‌ରେ ବସିବାକୁ ଚାହିଁଲେ । ସେ ନିଜେ ସକାଳ ପାଇଁ ଭରି ରଖିଥିବା ପାଣି ଟବ୍ **ରାଧାଶ୍ୟାମ ମହାରାଜ** ଓ ତାଙ୍କ ଝିଅ ଟେକିଆଣି ଥୋଇ ଦେଲାରୁ ସେ ଟବ୍‌ରେ ବସିଲେ ଏବଂ ଝାଡ଼ା ପ୍ରସ୍ରାବ ହୋଇ ଗଲା ବୋଲି କହିଲେ । ଏଣେ **ଫକୀର ମିଶ୍ର** କୃଷ୍ଣପ୍ରିୟା ଦାସଙ୍କ ପାଟି ଶୁଣି ଡାକ୍ତର **ଶରତ୍ ମିଶ୍ର**ଙ୍କ ଘରକୁ ତାଙ୍କୁ ଡାକିବାକୁ ଚାଲିଗଲେ । ଆଉ ଜଣେ ଡାକ୍ତର **ହରୀଶ ରାୟ**ଙ୍କୁ ଡ଼ାକିବାକୁ ଗଲେ ।



ରାଧାଶ୍ୟାମ ମହାରାଜ



ଅନ୍ନପୂର୍ଣ୍ଣା ମହାନ୍ତି



ହଠାତ୍ ଗୋପବାବୁ କହିଲେ " ମୁଁ କଣ ଦେଖୁଛି ! କି ଦିବ୍ୟ ଆଲୋକ! କି ସୁନ୍ଦର ଆଲୋକ! ଅସିଛ ଯଦି ପ୍ରଭୁ କୋଳକୁ ନିଅ । ଦୟାମୟ ! ତୁମରି ଇଚ୍ଛା ପୂର୍ଣ୍ଣ ହେଉ " । ଏହା କହି ସେ ଢଳି ପଡ଼ିଲାରୁ କୃଷ୍ଣପ୍ରିୟା ଦାସ କହିଲେ "ଜୟ ଗୁରୁ" । ଗୋପବାବୁ କହିଲେ " ହଁ ଜୟଗୁରୁ । ମୋତେ ଶୁଆଇ ଦିଅ ମୁଁ ମରିଯାଏ ।"

ରମାଦେବୀ ଶୋଇଥିବା ଘରେ ତଳେ ଗ୍ରାଉଣ୍ଡ ସିଟ୍ ପାରି ତାଙ୍କୁ ଧରିଆଣି ଶୁଆଇ ଦିଆଗଲା । ଅନ୍ନପୂର୍ଣ୍ଣା ମହାନ୍ତି ଓ କୃଷ୍ଣପ୍ରିୟା ଦାସ ତାଙ୍କ ଓଦା ଗାମୁଛା ବଦଳାଇ ଦେଲେ । ଶୁଖିଲା ଚାଦର ତାଙ୍କ ଝିଅ ଛାତି ଘୋଡ଼ାଇ ଦେବାରୁ ସେ ଚାଦର ଫିଂଗି ଦେଲେ । ପାଟିରୁ ଫେଣ ବାହାରିଲା । କୃଷ୍ଣପ୍ରିୟା ଦାସ ନାଡ଼ି ଦେଖି କୃତ୍ରିମ ଶ୍ୱାସ ପ୍ରଶ୍ୱାସ ଦେଇ ଡାକ୍ତର ଡାକ୍ତର ପାଟିକଲେ । ୨ । ୩ ମିନିଟ୍ ପରେ ଡାକ୍ତର ହରିଶ ରାୟ ଆସି ଥମକା ହୋଇ ବସିଲେ । ସେତେବେଳେ ରାତି ୧୧ ଟା ୫୫ ମିନିଟ । ବୈଶାଖ ଶୁକ୍ଳ ଦଶମୀର ଜ୍ୟୋତ୍ସ୍ନା, ସୁନ୍ଦର ସୁଲୁସୁଲିଆ ପବନ, ସେ ନିଜେ ଲଗାଇଥିବା ମଲ୍ଲୀଗଛର ଫୁଲରେ ଘର ମହକୁଥାଏ । ସେ ଚାଲିଗଲେ ।

ପ୍ରାଣୀର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।



ରମାଦେବୀ ୧୯୬୯

## ଗୋପବାବୁଙ୍କ ମୌଳିକ ରଚନା:

ଗାନ୍ଧୀ ଓ ଉତ୍କଳ,
ଚାଷୀ ମୂଲିଆ ଗାନ୍ଧୀ,
ସୂତାକଟା ଶିକ୍ଷା,
କଟାଳୀ ପୋଥୀ,
୧୯୫୭ (ପଦ୍ୟ)

## ଗୋପବାବୁ ଅନୁବାଦ କରିଛନ୍ତି:

ଆତ୍ମକଥା ବା ସତ୍ୟର ପ୍ରୟୋଗ,
ଗୀତାବୋଧ,
ସପ୍ତ ମହାବ୍ରତ,
ମଂଗଳ ପ୍ରଭାତ,
ଇନ୍ଦ୍ରିୟ ସଂଯମ ବନାମ ଇନ୍ଦ୍ରିୟ ଲାଳସା,
ସମଶ୍ଳୋକୀ ଗୀତା (ଆଚାର୍ଯ୍ୟ ମହାଶୟ ଓ ଭାଗୀରଥି ମହାପାତ୍ରଙ୍କ ସହ)

## ଗୋପବନ୍ଧୁ ଚୌଧୁରୀଙ୍କ ସମ୍ବନ୍ଧରେ ବର୍ଣ୍ଣନା ଥିବା କେତେକ ପୁସ୍ତକ:

1. *ଦୀପଂଜ୍ୟୋତି,* ଗୋପୀନାଥ ମହାନ୍ତି, ପ୍ରକାଶକ- ଗ୍ରାମସେବକ ସମାବାୟ ପ୍ରେସ୍, କଟକ
2. *ଧୂଳିମାଟିର ସନ୍ଥ,* ଗୋପୀନାଥ ମହାନ୍ତି, ପ୍ରକାଶକ- ବିଦ୍ୟାପୁରୀ, କଟକ
3. *ଶତାବ୍ଦୀର ସୂର୍ଯ୍ୟ,* ସୁରେନ୍ଦ୍ର ମହାନ୍ତି, ପ୍ରକାଶକ- ଲାର୍କବୁକ୍ସ, କଟକ
4. *କୁଳବୃଦ୍ଧ,* ସୁରେନ୍ଦ୍ର ମହାନ୍ତି, ପ୍ରକାଶକ- ,ଲାର୍କବୁକ୍ସ କଟକ
5. *ଜୀବନ ପଥେ,* ରମାଦେବୀ, ଗ୍ରନ୍ଥ ମନ୍ଦିର, କଟକ
6. *କସ୍ତୁରୀମୃଗସମ,* ମନମୋହନ ଚୌଧୁରୀ, କାହାଣୀ, କଟକ
7. *ଅମୃତ ଅନୁଭବ,* ଅନ୍ନପୂର୍ଣ୍ଣା ମହାରାଣା, ଶିକ୍ଷା ସନ୍ଧାନ, ଭୁବନେଶ୍ୱର
8. *ବିପ୍ଳବୀ ଗୋପବନ୍ଧୁ* ଅନ୍ନପୂର୍ଣ୍ଣା ଦାସ, ଗାଂଧୀ ସ୍ମାରକ ନିଧି, ଉତ୍କଳ, କଟକ
9. *ଅନୁଭବମାଳା, ୧, ୨, ୩* ଶରତ୍ ଚନ୍ଦ୍ର ମହାରାଣା, ଶିକ୍ଷା ସନ୍ଧାନ, ଭୁବନେଶ୍ୱର ଭୁବନେଶ୍ୱର
10. *ବହ୍ନିମାନ,* ପ୍ରଫୁଲ୍ଲ ଦାସ, ଲୋହିଆ ଏକାଡ଼େମୀ ଟ୍ରଷ୍ଟ, ଭୁବନେଶ୍ୱର
11. *ଜଣେ ଯାତ୍ରୀ,* ଅନାଦି ନାୟକ,

12. *ଋଣ ପରିଶୋଧ,* ବିନୋଦ୍ କାନୁନଗୋ, ଜ୍ଞାନ ମଣ୍ଡଳ, ଭୁବନେଶ୍ୱର
13. *ଗାନ୍ଧିଜୀଙ୍କ ଉତ୍କଳରେ ପଦଯାତ୍ରା,* ବିନୋଦ୍ କାନୁନଗୋ, ଗୋପବନ୍ଧୁ ସାହିତ୍ୟ ମନ୍ଦିର, କଟକ
14. *ଓଡ଼ିଶାରେ ବ୍ୟାସକବି,* ଅନାଦି ନାୟକ,
15. *ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ,* ସୁରେନ୍ଦ୍ରନାଥ ପଟ୍ଟନାୟକ, ଗ୍ରନ୍ଥ ମନ୍ଦିର
16. *National Movement and Politics in Orissa, 1920-1929,* Pritish Acharya, SAGE Publications India, isbn=8132100018
17. *ମୋ ମାମୁ,* ଜ୍ଞାନଦେବ ମହାରାଣା, ଭୁବନେଶ୍ୱର
18. *ମୁକ୍ତି ସଂଗ୍ରାମରେ ବରୀ ଅଂଚଳ,* ଅକ୍ଷୟ କୁମାର ମହାନ୍ତି, ଗାନ୍ଧୀନଗର, କୋରାପୁଟ
19. *ଓଡ଼ିଶାରେ ମୌଳିକ ଶିକ୍ଷାର ପ୍ରୟୋଗ,* ପ୍ରକାଶକ - ଶିକ୍ଷା ସନ୍ଧାନ, ଭୁବନେଶ୍ୱର, ISBN;81-87982-02-0
20. *ସ୍ମୃତିର ସୁରଭି,* ବୈକୁଣ୍ଠନାଥ ମହାନ୍ତି, ଓଡ଼ିଶା ବୁକ୍ ଷ୍ଟୋର୍, କଟକ
21. *ସ୍ୱାଧୀନତା ସଂଗ୍ରାମରେ ବାନର ସେନା,* ୧, ୨, ୩ ଭାଗ, ପୁରୁଷୋତ୍ତମ ସିଂହ, ଶ୍ରୀ ପ୍ରେସ୍, କାଜୀ ବଜାର, କଟକ
22. *Between Two Worlds, East and West: An Autobiography,* J. N. Mohanty, Oxford, 2002, ISBN 0195648358
23. , ଗୋପବନ୍ଧୁ ଚୌଧୁରୀଙ୍କ ଜେଲ୍ ଡାଏରୀର କିୟଦଂଶ (ଅପ୍ରକାଶିତ)



ତଳ ଧାଡ଼ି ଡାହାଣରୁ ମାଧବୀ, ମଙ୍ଗଳା ଦେବୀ; ମଝି ଧାଡ଼ିରେ ଗୋପବନ୍ଧୁ, ରମାଦେବୀ ଓ ସାନପୁଅ ସହ ଲେଖିକା; ପଛରେ ଡାହାଣରୁ ସୁମିତ୍ରା ଦେବୀ, ଇନ୍ଦିରା ଦେବୀ (ଚଟ୍ଟୋପାଧ୍ୟାୟ)

ଲେଖିକା (୩.୧୧.୧୯୧୭-୩୧.୧୨.୨୦୧୨) ପିଲା ଦିନୁଁ ସ୍ୱାଧୀନତା ଅନ୍ଦୋଳନରେ ଯୋଗଦାନ, ଲବଣ ସତ୍ୟାଗ୍ରହ କରି ୧୯୩୨ରେ ପ୍ରଥମ କାରାବାସ, ପରେ ମରଣସେନା ଗଢ଼ି ୧୯୪୨-୪୪ ପର୍ଯ୍ୟନ୍ତ । କୌଣସି ସ୍କୁଲକୁ କେବେ ହେଁ ନ ଯାଇ ଇଙ୍ଗ୍ରାଜୀ, ସଂସ୍କୃତ ଓ ଅନ୍ୟ ୫ଟି ଭାଷାରେ ନିପୁଣ; ସର୍ବୋଦୟ ସାହିତ୍ୟାନୁବାଦିକା, ସୁଲେଖିକା ଓ ବକ୍ତା ରୂପେ ପରିଚିତା । ଶିଶୁ ଓ ପ୍ରୌଢ଼ ଶିକ୍ଷା, ମୌଳିକ ଶିକ୍ଷା, ଖଦୀ, ହରିଜନ ସେବା, କୃଷି ଓ ଗୋସମ୍ପଦର ଉନ୍ନତି ଠାରୁ ମହୁଚାଷ ଭଳି ବିଭିନ୍ନ ୨୧ଟି ଗଠନ ମୂଳକ କାର୍ଯ୍ୟକ୍ରମ ଓ ଭୂଦାନ ସର୍ବୋଦୟ ଆନ୍ଦୋଳନ; ବନ୍ୟା, ବାତ୍ୟା, ମରୁଡ଼ି, ଦୁର୍ଭିକ୍ଷ ଆଦି ସବୁ ପ୍ରାକୃତିକ ବିପତ୍ତି ଓ ସଙ୍କଟରେ ତ୍ରାଣକାର୍ଯ୍ୟ; ବାଳାଶ୍ରମ ପ୍ରତିଷ୍ଠା; ଢେଙ୍କାନାଳ ଅତ୍ୟାଚାର ଉଦ୍‌ବାସ୍ତୁ ଓ ବାଙ୍ଗ୍ଲାଦେଶ ଶରଣାର୍ଥୀଙ୍କ ସେବା; ବିଭିନ୍ନ ସାମ୍ପ୍ରଦାୟିକ ଦଙ୍ଗାଗୋଳରେ ଏବଂ (ତଥାକଥିତ) ଦସ୍ୟୁ ଅଧ୍ୟୁସିତ ଚମ୍ବଲ୍ ଉପତ୍ୟକାରେ ଶାନ୍ତିରକ୍ଷା; ମଦ, ନିଶା ବିରୋଧ; ଜରୁରି କାଳୀନ ପରିସ୍ଥିତି ଓ ଏକଛତ୍ରବାଦକୁ ବିରୋଧ, କ୍ଷତିକାରକ ଶିଳ୍ପକୁ ବିରୋଧ; ସ୍ୱଦେଶୀ ଆନ୍ଦୋଳନ; ଆଦିବାସୀ କନ୍ୟାଶ୍ରମ ସ୍ଥାପନା ପ୍ରମୁଖରେ ମଜ୍ଜି ରହି ସଜ୍ଜନ ସଙ୍ଗତିପୂର୍ଣ୍ଣ ଅମୃତ ଅନୁଭବୀ ସଙ୍ଗୀତମୟ ଜୀବନ ।